


ସୁବର୍ଣ୍ଣ ଜୟନ୍ତୀ ପ୍ରକାଶନ ମାଳା

# ଜଳନ୍ଧର ଦେବ ରଚନାବଳୀ

( ଦ୍ୱିତୀୟ ଭାଗ )

ସଂକଳକ

ଶ୍ରୀ ରାମଚନ୍ଦ୍ର ବ୍ରହ୍ମା

# ଜଳନ୍ଧରଦେବ ରଚନାବଳୀ

## ଦ୍ୱିତୀୟ ଖଣ୍ଡ (ଗଳ୍ପ)

ସଂକଳକ : ଡକ୍ଟର ରାମଚନ୍ଦ୍ର ବ୍ରହ୍ମା




ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# ଜଳନ୍ଧରଦେବ ରଚନାବଳୀ
## ଦ୍ୱିତୀୟ ଖଣ୍ଡ (ଗଳ୍ପ)

*ସଂକଳକ :* ଡକ୍ଟର ରାମଚନ୍ଦ୍ର ବ୍ରହ୍ମା

*ପ୍ରକାଶକ :*
ଓଡ଼ିଶା ସାହିତ୍ୟ ଏକାଡେମୀ, ସଂସ୍କୃତି ଭବନ
ଭୁବନେଶ୍ୱର-୭୫୧୦୧୪

*ପ୍ରଥମ ପ୍ରକାଶ :* ୨୦୦୮

*ମୁଦ୍ରଣ :*
ଶ୍ରୀ ମା' ପ୍ରିଣ୍ଟର୍ସ
ଜି-୨, ବିଜେବି ନଗର
ଭୁବନେଶ୍ୱର - ୭୫୧୦୧୪

ମୂଲ୍ୟ : ଟ. ୯୦.୦୦ (ନବେ ଟଙ୍କା ମାତ୍ର)

**Jalandhar Dev Rachanavali**

Second part (short story)

*Compaliar :* Dr. Ramachandra Brhma

*Publisher :* Orissa Sahitya Akademi
Sanskruti Bhawan
Bhubaneswar-751014

First Publication : 2008

*Printed at :* Shree Maa Printers
G-2, B.J.B. Nagar
Bhubaneswar - 751014

ISBN : 81 - 7586-176-2

Price : Rs. 90.00 (Rupees ninty only)

# ଆଦ୍ୟପାଦ

ଜଳନ୍ଧରଦେବ (୧୮୭୨-୧୯୫୨) ଏକା ଧାରରେ ଜଣେ ପ୍ରାବନ୍ଧିକ, ଗାଳ୍ପିକ, ନାଟ୍ୟକାର, କବି ଓ ଭ୍ରମଣ ବୃତ୍ତାନ୍ତ ଲେଖକ ଭାବରେ ଓଡ଼ିଆ ସାହିତ୍ୟ ଜଗତରେ ବେଶ୍ ଜଣାଶୁଣା, ଓଡ଼ିଶାର ପଶ୍ଚିମାଞ୍ଚଳରେ ସ୍ଥିତ ବାମଣ୍ଡା ରାଜବଂଶର ଦାୟାଦମାନଙ୍କ ମଧ୍ୟରୁ ବାସୁଦେବ ସୁଢଳଦେବ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଓ ବଳଭଦ୍ର ଦେବ ପ୍ରଭୃତି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସାଧକ ଭାବରେ ଖ୍ୟାତି ଲାଭ କରିଯାଇଛନ୍ତି। ଜଳନ୍ଧର ଦେବ ବାମଣ୍ଡା ପ୍ରଶାସନ କାର୍ଯ୍ୟରେ ଲିପ୍ତ ରହି ତାଙ୍କ ଦକ୍ଷତାର ପରିଚୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ପାଇଁ ଯେଉଁ ଐକାନ୍ତିକ ଚେଷ୍ଟା କରିଥିଲେ ତାହାର ତୁଳନା ନାହିଁ ସେ ରାଶି ରାଶି ପ୍ରବନ୍ଧ ଓ ଗଳ୍ପ ରଚନାକରି ସେତେବେଳେ ପ୍ରକାଶ ପାଇଥିବା ସାହିତ୍ୟ ପତ୍ରିକା ଉତ୍କଳ ସାହିତ୍ୟ, ସହକାର, ଭଞ୍ଜ ପ୍ରଦୀପ, ରସଚକ୍ର, ଉପହାର ଓ ଶଙ୍ଖ ଇତ୍ୟାଦିରେ ପ୍ରକାଶ କରିଥିଲେ। ଅଜସ୍ର ସୃଜନଶୀଳ ଓ ମନନଶୀଳ ସାହିତ୍ୟକୃତିକୁ ଓଡ଼ିଆ ବାଣୀ ଭଣ୍ଡାରକୁ ଉପହାର ଦେଇ ଖ୍ୟାତ ହୋଇଥିବା ଜଳନ୍ଧରଦେବ ଓଡ଼ିଆ ଜାତିର ଜଣେ ସୁଯୋଗ୍ୟ ସ୍ରଷ୍ଟା ଏଥିରେ ଦ୍ୱିମତ ନାହିଁ। ଜଳନ୍ଧରଙ୍କ ରଚନାବଳୀ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ସଂପଦ ଭାବରେ ଗ୍ରହଣ କରି ଏକାଡେମୀ ତାଙ୍କର ରଚନାବଳୀକୁ ୧୯୮୬ ମସିହାରେ ଏକତ୍ର ସଂକଳନ କରି ପ୍ରଥମଖଣ୍ଡ ପ୍ରକାଶ କରିଥିଲା। ଏଥିରେ ବିଶେଷକରି ତାଙ୍କ ଦ୍ୱାରା ରଚିତ ଭାଷା ଓ ସାହିତ୍ୟ ବିଷୟକ ପ୍ରବନ୍ଧ ତଥା ଧର୍ମ ଓ ସଂସ୍କୃତି ବିଷୟକ ପ୍ରବନ୍ଧମାନ ସ୍ଥାନିତ କରାଯାଇଥିଲା। ଏହି ପୁସ୍ତକର ସଂକଳକ ଭାବରେ ଡକ୍ଟର ରାମଚନ୍ଦ୍ର ବ୍ରହ୍ମା ବହୁ ଶ୍ରମ ସ୍ୱୀକାର କରି ଜଳନ୍ଧରଦେବଙ୍କ ଆଲେଖ୍ୟ ସବୁ ସଂଗ୍ରହ କରିଥିଲେ। ଏଥିରୁ ପ୍ରବନ୍ଧ ଗୁଡ଼ିକ ପ୍ରଥମଖଣ୍ଡରେ ପ୍ରକାଶ ପାଇସାରିବା ପରେ ଏହି ପୁସ୍ତକଟି ଛାତ୍ର, ଅଧ୍ୟାପକ, ଗବେଷକମାନଙ୍କ ଦ୍ୱାରା ବହୁଳ ଭାବରେ ଆଦୃତ ହେବା ସଙ୍ଗେ ସଙ୍ଗେ ଜଳନ୍ଧରଙ୍କ ଅନ୍ୟାନ୍ୟ କୃତି ଗୁଡ଼ିକ ଅବଲୁପ୍ତ ହୋଇଯାଉଥିବାରୁ ତାହାକୁ ଯଥାଶୀଘ୍ର ଉଦ୍ଧାର କରି ପୁସ୍ତକ ଆକାରରେ ପ୍ରକାଶନ ନିମନ୍ତେ ଦାବି କରି ଆସୁଥିଲେ। ସେମାନଙ୍କର ଦାବି ପ୍ରତି ଏକାଡେମୀ ସାଗ୍ରହ ସ୍ୱୀକୃତି ପ୍ରଦାନ ସ୍ୱରୂପ

ଜଳନ୍ଧର ଦେବଙ୍କ ଗଳ୍ପ ସମୂହକୁ ଏକତ୍ର ସଂକଳନ କରି ଉକ୍ତ ରଚନାବଳୀର ଦ୍ୱିତୀୟ ଖଣ୍ଡ ପ୍ରକାଶ ନିମନ୍ତେ ନିଷ୍ପତ୍ତି ଗ୍ରହଣ କରିଥିଲେ। ଏହି ସଂକଳନ ଦାୟିତ୍ୱ ଡକ୍ଟର ରାମଚନ୍ଦ୍ର ବ୍ରହ୍ମାଙ୍କୁ ପ୍ରଦାନ କରାଯାଇଥିଲା। ଡକ୍ଟର ବ୍ରହ୍ମା ଜଳନ୍ଧରଦେବଙ୍କ ଗଳ୍ପ ସମୂହକୁ ପୁରୁଣା ପତ୍ର ପତ୍ରିକାରୁ ସଂଗ୍ରହ କରି ଏକତ୍ର ସଂକଳନ କରିଥିବାରୁ ଏକାଡେମୀ ପକ୍ଷରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି।

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠାର ପଚାଶ ବର୍ଷ ପୂର୍ତ୍ତୀ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବକାଶରେ ଆମ ଭାଷାର ଗୌରବ ଜଳନ୍ଧର ଦେବଙ୍କ ରଚନାବଳୀ ଦ୍ୱିତୀୟ ଖଣ୍ଡ (କ୍ଷୁଦ୍ରଗଳ୍ପ) ସଂକଳନ ପ୍ରକାଶ ପାଉଥିବା ଅତ୍ୟନ୍ତ ଖୁସିର କଥା। ଏକାଡେମୀର ଏହି ଗୁରୁତ୍ୱପୂର୍ଣ୍ଣ ସମୟରେ ଓଡ଼ିଆ ଭାଷାର ଜଣେ ଅନନ୍ୟ ସ୍ରଷ୍ଟାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ଏହି ଅନୁଷ୍ଠାନ ନିଜକୁ ଗୌରବାନ୍ୱିତ ମନେ କରୁଅଛି। ଓଡ଼ିଆ ସାହିତ୍ୟର ବିଦଗ୍ଧ ପାଠକ ମଣ୍ଡଳୀଙ୍କ ଦ୍ୱାରା ଏହି ଗ୍ରନ୍ଥଟି ଆଦର ଲାଭ କଲେ ଏକାଡେମୀର ଶ୍ରମ ଲାଘବ ହେବ ବୋଲି ଆଶା କରୁଅଛୁ।

ଭୁବନେଶ୍ୱର
୨୫ ଡିସେମ୍ବର ୨୦୦୮

ଡକ୍ଟର ହରପ୍ରସାଦ ପରିଚ୍ଛାପଟ୍ଟନାୟକ
ସଚିବ

# ମୁଖବନ୍ଧ

ଉତ୍କଳର ଉଜ୍ଜୟିନୀ ବାମଣ୍ଡାର ରାଜଧାନୀ । 'ବୁଧଦୂମ୍ନ କେଳିସର ଦେବଦୁର୍ଗରେ ତା ୧୫-୧୦-୧୮୭୨ରେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ତଥା ବିଶିଷ୍ଟ ପ୍ରାବନ୍ଧିକ, ସମ୍ବେଦନଶୀଳ ଗାଳ୍ପିକ, ସୁଦକ୍ଷ ସଂପାଦକ, ପ୍ରଗଳ୍ଭ ବକ୍ତା, ମର୍ଯାଦାବନ୍ତ ପ୍ରଶାସକ ଜଳନ୍ଧରଦେବ ଏକ ରାଜବଂଶୀୟ ପରିବାରରେ ଆବିର୍ଭୂତ ହୋଇଥିଲେ । ସେ ବହୁ ପ୍ରତିଭାର ଅଧିକାରୀ ହୋଇଥିଲେ । ତୁଳସୀ ଦୁଇପତ୍ରରୁ ବାସିଲାପରି ଜଳନ୍ଧରଦେବ ତଦାନୀନ୍ତନ ୨୭ତମ ଗଙ୍ଗବଂଶୀୟ ପଣ୍ଡିତ ଗୁଣବନ୍ତ ରାଜା ବାସୁଦେବ ସୁଢ଼ଳଦେବଙ୍କ ପରିବାରରେ ଲାଳିତ ପାଳିତ ହେବାର ସୁଯୋଗ ଲାଭ କଲେ । ତାଙ୍କର ସମବୟସ୍କ ଟୀକାୟତ ସଚ୍ଚିଦାନନ୍ଦଙ୍କ ସାନ୍ନିଧ୍ୟ, ତଥା ସହାଧ୍ୟୟନ ତାଙ୍କର ସାହିତ୍ୟ ପ୍ରତିଭାକୁ ବିକଶିତ କରିପାରିଥିଲା । ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରତିଷ୍ଠିତ ୧୮୯୦ ସାଲରେ 'ବାମଣ୍ଡା ଛାତ୍ର ସମିତି'ର ସମ୍ପାଦନା କାର୍ଯ୍ୟ ତାଙ୍କ ପ୍ରାବନ୍ଧିକ ପ୍ରତିଭାର ବିକାଶ ସାଧନରେ ସହାୟକ ହେଲା । ତେଣୁ ପରବର୍ତ୍ତୀ କାଳରେ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକରୂପେ ପ୍ରତିଷ୍ଠା ଲାଭ କରିପାରିଥିଲେ । ମୁଖ୍ୟତଃ ଶ୍ରେଷ୍ଠ ପ୍ରାବନ୍ଧିକ ରୂପେ ପରିଗଣିତ ହେଲେ ମଧ୍ୟ ଗଳ୍ପ / କବିତାଦି ରଚନାରେ ମନୋନିବେଶ କରିଥିଲେ । ବିଶେଷତଃ ତାଙ୍କର ସାହିତ୍ୟିକ ଜୀବନକୁ ତିନୋଟି ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇପାରେ ଯଥା -

ପ୍ରଥମ ପର୍ଯ୍ୟାୟ (୧୮୯୦ - ୧୯୦୩) (ଅଭ୍ୟୁଦୟ କାଳ)
ଦ୍ୱିତୀୟ ପର୍ଯ୍ୟାୟ (୧୯୦୪ - ୧୯୫୦) (ବିକାଶ କାଳ)
ତୃତୀୟ ପର୍ଯ୍ୟାୟ (୧୯୨୫ - ୧୯୫୦) (କ୍ରାନ୍ତି କାଳ)

ତୃତୀୟ ପର୍ଯ୍ୟାୟହିଁ ତାଙ୍କର ସାହିତ୍ୟ-ପ୍ରତିଭାର ଉତ୍ତରଣ ସମୟ । ୧୯୨୪ ସାଲରେ କର୍ମମୟ ଜୀବନ (ପ୍ରଶାସନିକ ଦେୱାନ)ରୁ ଅବସର ଗ୍ରହଣ କଲେ ଶଂସିତ କାଳରେ ସବୁଜ-ଯୁଗୀୟ ଚେତନା, ରହସ୍ୟବାଦୀ ଚେତନା ତଥା ଦ୍ୱୈତବାଦୀ ଚେତନାର ପ୍ରଭାବ ଓଡ଼ିଆ ସାହିତ୍ୟକୁ ଉଜ୍ଜ୍ୱଳିତ କରିଥିଲା । ସାହିତ୍ୟିକ ଜଳନ୍ଧର ଦେବ ସବୁଜ-ଯୁଗୀୟ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ହେଲେ । ତାଙ୍କର ସମାଜ ସଂସ୍କାର ପରିକଳ୍ପନା ପ୍ରବନ୍ଧରେ ବିଶେଷତଃ ଗଳ୍ପମାନଙ୍କରେ ବିଶେଷ ରୂପେ କାର୍ଯ୍ୟକାରୀ ହେଲା ।

କହିବା ବାହୁଲ୍ୟ ଯେ ଭାରତର ପ୍ରଖ୍ୟାତ ଓଡ଼ିଶା ସାହିତ୍ୟ ଏକାଡେମୀ ଏହି ବିଶିଷ୍ଟ ପ୍ରାବନ୍ଧିକଙ୍କ ରଚନାକୃତି (ପ୍ରବନ୍ଧଭାଗ, 'ଭାଷା ସାହିତ୍ୟ'/ଧର୍ମ ଓ ସଂସ୍କୃତି) (୧ମ ଖଣ୍ଡ) (୧୮୮୬) ପ୍ରକାଶନ ପୂର୍ବକ ଓଡ଼ିଆ ସାହିତ୍ୟ ଜଗତକୁ ଋଦ୍ଧି କରିଛନ୍ତି ।

ବିଶିଷ୍ଟ ଗାଳ୍ପିକ ଜଳନ୍ଧରଦେବଙ୍କ ବିଶିଷ୍ଟ ପତ୍ର ପତ୍ରିକାରେ ମୁଖ୍ୟତଃ ତାଙ୍କର ପ୍ରିୟ ସାହିତ୍ୟିକ ବନ୍ଧୁ ବିଶ୍ୱନାଥ କରଙ୍କ ସଂପାଦିତ "ଉତ୍କଳ ସାହିତ୍ୟ" ପତ୍ରିକାରେ ପ୍ରକାଶିତ ଗଳ୍ପମାତ୍ର। ଏକ ଅଭିନବ ସାମାଜିକ ସାଂସ୍କୃତିକ ଚେତନା ତଥା ଜାଗରଣ ସୃଷ୍ଟି କରିପାରିଥିଲା। ତଦାନୀନ୍ତନ 'ସହକାର' ମାସିକ ପତ୍ରିକାରେ ମଧ୍ୟ ଅଳ୍ପ କେତୋଟି ଗଳ୍ପ ପ୍ରକାଶିତ। ଶଂସିତ ପର୍ଯ୍ୟାୟରେ ବହୁ ଗାଳ୍ପିକ ଜଳନ୍ଧରଦେବଙ୍କ ପ୍ରକାଶିତ ଗଳ୍ପମାନେ ହେଲେ, ବିଭିନ୍ନ ଚେତନାଧର୍ମୀ। ଯୁଗସ୍ରଷ୍ଟା ଆଦ୍ୟ କଥାକାର ଫକୀରମୋହନ (୧୮୪୩-୧୯୧୮)ଙ୍କର ଗଳ୍ପ ସମୂହ ଭିନ୍ନ ମୋଡ଼ ନେଇ ଗଢ଼ି ଉଠିଥିଲା। ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଓଡ଼ିଶାର ଆଦିବାସୀ, ଅବହେଳିତ ତଥା ନିମ୍ନବର୍ଗ ସମାଜର ଅର୍ଥନୈତିକ ବିକାଶ ତଥା ସାମାଜିକ ଉନ୍ନତି ବିଧାନ, କୁସଂସ୍କାର ଦୂରୀକରଣ ଜଳନ୍ଧରଦେବଙ୍କର ଗଳ୍ପ ରଚନାର ପ୍ରଧାନ ଆଭିମୁଖ୍ୟ ଥିଲା। ତେଣୁ ସେ ଯାବତୀୟ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏକ ନୂତନ ସାମାଜିକ ଚେତନା ସୃଷ୍ଟି କରିଥିଲେ।

ଜଳନ୍ଧରଦେବଙ୍କ ନିର୍ବାଚିତ ଗଳ୍ପମାନଙ୍କୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏସବୁ ୧୯୨୮ ସାଲରୁ ୧୯୩୫ ସାଲ ମଧ୍ୟରେ ବିରଚିତ। କର୍ମରୁ ଅବ୍ୟାହତି ନେବାପରେ ସମାଜର ବିଭିନ୍ନ ସଂସ୍କାରବିଧାନରେ ମନୋନିବେଶ କରିଛନ୍ତି।

ଗୌରୀ ଓ କାହ୍ନୁ (୧୯୨୮) ଏକ ସାମାଜିକ ଗଳ୍ପ। ଗୌରୀ ଏକ ନବଯୌବନ ସଂପନ୍ନା କନ୍ୟା ଓ ତାର ସାଥୀ ଉଭୟେ 'ଶଂଖାରି'ଯୋଡ଼ ବିକଶିଛି, ଅରଣ୍ୟରେ ଫଳମୂଳ ଆହରଣ କାଳରେ ଅନ୍ୟ ଏକ ତରୁଣ ଯୁବକ 'କାହ୍ନୁ' ସହିତ ଗୌରୀର ସାକ୍ଷାତ୍‌ଲାଭ ତାର ମାମୁଁଗରେ ବିବାହ କାର୍ଯ୍ୟ ଉପେଦକ ଓ ତଦାନୀନ୍ତନ କୌଳିକ ପ୍ରଥା ଅନୁଯାୟୀ ପାୟଶ୍ଚିତ୍ତବିଧାନ ଆଦି ପ୍ରସଙ୍ଗ ନିହିତ।

ଅତିଥି ସତ୍କାର (୧୯୨୮) ଗଳ୍ପଟି ଓଡ଼ିଶାର ଏକ ସରଳ ଆଦିବାସୀ ପରିବାରର ତତ୍କାଳୀନ ପାରିବରିକ ଜୀବନର ଏକ ଜୀବନ୍ତ ଆଲେଖ୍ୟ। ପଲ୍ଲୀ ଜୀବନରେ ଶାନ୍ତ ସ୍ନିଗ୍ଧ ବାତାବରଣ ମଧ୍ୟରେ ଜଳବନ୍ଧ ଗ୍ରାମର କୋହ୍ଲ ପରିବାରର 'ଲୁନ୍ଦାକୋହ୍ଲ' ପରିବାରରେ ଆତିଥ୍ୟ ଗ୍ରହଣର ନିଚ୍ଛକ ବର୍ଣ୍ଣନା ପ୍ରତିଫଳିତ।

ଆଈନାତଣୀ (୧୯୨୯) ତତ୍କାଳୀନ ସମାଜରେ ବାଲ୍ୟବିବାହ ନିଷେଧ ତଥା ଯୁବତୀ ବିବାହ ବା ବିଧବା ବିବାହ ପ୍ରଚଳନ ଅତ୍ୟନ୍ତ କଠିନ ସମସ୍ୟା ଥିଲା। ସମାଜରେ ନିର୍ଯ୍ୟାତନା, ଅକାଳବୈଧବ୍ୟ ଦୁଃଖ ପ୍ରପୀଡ଼ିତା କେତେକ ବାଳବିଧବାଙ୍କ କରୁଣ କାହାଣୀର ସ୍ପଷ୍ଟ ପ୍ରତିଫଳନ ସ୍ୱରୂପ ଗଳ୍ପଟିର ଆୟୁପ୍ରକାଶ। ସଂସ୍କାରପ୍ରିୟ ଲେଖକ ନୂତନ ଦୃଷ୍ଟିଭଙ୍ଗୀ ଫେଡ଼ି ସଂସ୍କାର ବିଧାନ ନିମିତ୍ତ ନବ୍ୟଶିକ୍ଷିତ ସମାଜକୁ ଆହ୍ୱାନ ପ୍ରଦାନ କରିଛନ୍ତି। ଅହଲ୍ୟା, ସାବିତ୍ରୀ ପ୍ରଭୃତି ବାଳବିଧବାଙ୍କର ଆଈଙ୍କ ସଙ୍ଗେ ଭାବ ବିନିମୟ ଏହାର ମୁଖ୍ୟ ବିଷୟ।

ଘନିଷ୍ଠତା କ୍ଷଣସ୍ଥାୟୀ – (୧୯୨୯) ଏକ ଦାର୍ଶନିକ ତଥ୍ୟପୂର୍ଣ୍ଣ ଗଳ୍ପ।

ଗୁରୁ ସଦାନନ୍ଦ ଏବଂ ଦୁଇ ଶିଷ୍ୟ, 'ଜୟନ୍ତ' ଓ 'ରେବତୀ' ମଧ୍ୟରେ କଥୋପକଥନ ଛଳରେ କେତେକ ବାସ୍ତବ ସତ୍ୟର ଉପଲବ୍ଧି ମଧ୍ୟରେ ଘନିଷ୍ଠତା ଯେ ସର୍ବଦା କ୍ଷଣସ୍ଥାୟୀ ଏହି ଚିରନ୍ତନ ସତ୍ୟ ଉଦ୍‌ଘାଟିତ।

ପତିତପାବନ ଡେରି (୧୯୨୯) ଏକ ସମାଜ ସଂସ୍କାରମୂଳକ ଗଳ୍ପ। ସେତେବେଳେ ସମାଜରେ ସ୍ପୃଶ୍ୟାସ୍ପୃଶ୍ୟ ଦୋଷ ଜାତିଗତ ଭାବନାରେ ବଦ୍ଧମୂଳ ଥିଲା। ତାର ମୂଳୋତ୍ପାଟନ ଉଦ୍ଦେଶ୍ୟରେ ଏକ ଚେତନା।

ମସ୍ତରାମର ମୁକ୍ତି (୧୯୩୧) (ତିନି) ଦାର୍ଶନିକଗଳ୍ପ "ମନ ଏବଂ ମନୁଷ୍ୟାଣାଂ କାରଣଂ ବନ୍ଧଃମୋକ୍ଷୟୋଃ।" ମନୁଷ୍ୟ ଶେଷ ଜୀବନରେ ପହଁଚେ ମୁକ୍ତି। କାଶ୍ମୀର ନିବାସୀ ମସ୍ତରାମ ଅଳ୍ପ ବୟସରୁ ଗୃହତ୍ୟାଗୀ ସନ୍ନ୍ୟାସୀ। ତୀର୍ଥ ପର୍ଯ୍ୟଟନରେ ରତ। ସେ ତଥାକଥିତ ଶିକ୍ଷିତ ନ ହେଲେ ମଧ୍ୟ ଅନେକ ଧର୍ମ ଧାରଣାର ବଶବର୍ତ୍ତୀ 'ପ୍ରତିମାପୂଜା' – ମୌଳିକତାରେ ଆବଦ୍ଧ। ତେଣୁ ତାର ଧାରଣା ଯେ ସଂସାର ବନ୍ଧନ ମନୁଷ୍ୟର ମୁକ୍ତିର ଅନ୍ତରାୟ ନ ହୋଇ କର୍ମବନ୍ଧନ ହିଁ ବେଳେବେଳେ ମୁକ୍ତିର ଅନ୍ତରାୟ ହୋଇଥାଏ।

ବିବାହ ଭୋଜି (୧୯୩୨) ସାମାଜିକ ଗଳ୍ପ। ଜନୈକ ଆଦିବାସୀ ପରିବାରରେ ଏକ କନ୍ୟାର ବିବାହ ପରେ ସୂର୍ଯ୍ୟ ବାନ୍ଧବ ରୂପେ ସାଦର ନିମନ୍ତ୍ରଣ ପାଇ ଭୋଜିରେ ଯୋଗଦାନ ଓ ନବଦମ୍ପତି ସହିତ ମୃଗୟା ତଥା ପକ୍ଷୀ ଶିକାର ପ୍ରଭୃତି ପ୍ରସଙ୍ଗ ବର୍ଣ୍ଣିତ।

ସନ୍ତାନ ସ୍ନେହ (୧୯୩୨) ଏକ ସମାଜ ସଂସ୍କାରମୂଳକ କ୍ଷୁଦ୍ର ଗଳ୍ପ। ଏହା ଆଠଟି ପରିଚ୍ଛେଦ ବିଶିଷ୍ଟ ହେତୁ ଦୀର୍ଘକାୟ। ମାତ୍ର ବିଷୟ ବହୁ ସରଳ। ଏକ ପ୍ରାକୃତିକ ଦୃଶ୍ୟର ରମଣୀୟ ନିର୍ଜନ ପରିବେଶରେ ଏକ ଅନ୍ତସତ୍ତ୍ୱା ରମଣୀ ସହିତ ଦୁଇଜଣ ମୃଗୟା ବିହାରୀ ଯୁବକଙ୍କର ହଠାତ୍ ସାକ୍ଷାତ୍ ଲାଭ ଓ ଅନ୍ୟତ୍ର ଅବସ୍ଥାନ ତଥା ଆଶ୍ରୟ ପ୍ରଦାନ – ଯୁବକ ଦ୍ୱୟଙ୍କ ମାନସିକ ପ୍ରତିକ୍ରିୟା – ରମଣୀର ଏକ ବର୍ଷଣମୁଖର ରାତ୍ରିରେ ଆଶ୍ରୟ ଗ୍ରହଣ ଓ ବୃତ୍ତାନ୍ତ ବର୍ଣ୍ଣନା – ବିବାହର ସ୍ୱଳ୍ପକାଳ ପରେ ବୈଧବ୍ୟ ପ୍ରପୀଡ଼ିତା – ଗୃହରେ ଦେବରଙ୍କ ସଙ୍ଗେ ପାପପ୍ରଣୟରେ ଲିପ୍ତ ହେତୁ ଅନ୍ତସତ୍ତ୍ୱା ଅବସ୍ଥା ପ୍ରାପ୍ତ, ତତ୍‌କାଳୀନ ଲୋକାପବାଦରୁ ରକ୍ଷା ପାଇଁ ସାମାଜିକ ବାସନ୍ଦରୁ ମୁକ୍ତି ପାଇଁ ତଥା 'ସନ୍ତାନ'ର ସୁରକ୍ଷା ପାଇଁ ସନ୍ତାନ ସ୍ନେହ ମମତାରେ ଅରଣ୍ୟ ନିବାସିନୀ – ତେଣୁ ଅବୈଧ ପ୍ରଣୟ ଜନିତ ପାପକୁ ଚରିତାର୍ଥ ନ ଦେବା ନିମିତ୍ତ ଏହା ଏକ ଚେତାବନୀ।

ପ୍ରକୃତିର ପ୍ରତିଶୋଧ (୧୯୩୩) – କୌଣସି ଦୈବୀ ଦୁର୍ବିପାକ ସମୟରେ ଏକ କୃତ୍ରିମ ଆସନ୍ନ ବିପଦରୁ ରକ୍ଷା ଉପଜୀବ୍ୟ ବସ୍ତୁ – କୌଣସି ଦୁର୍ଭିକ୍ଷ ସମୟରେ ହଇଜା ରୋଗାକ୍ରାନ୍ତ ଏକ ପରିବାରର ଏକ କ୍ଷୀଣ-ପ୍ରାଣ ଶିଶୁର ଅସହାୟ ଅବସ୍ଥାରେ ଜନୈକ

ଡକାୟତର ରାତ୍ରିରେ ଆକ୍ରମଣ, ମାତ୍ର ଜନନୀର କରୁଣ କାହାଣୀ। ଶ୍ରବଣରେ ତାର ପୈଶାଚିକ ପ୍ରବୃତ୍ତି ତ୍ୟାଗ ଓ ପଳାୟନ - ସାରବସ୍ତୁ।

ମୁକ୍ତିର ଇସାରା (୧୯୩୩) ଜୀବ ମାତ୍ରେ ସ୍ୱାଧୀନତା ତଥା ମୁକ୍ତିକାମୀ / ପିଞ୍ଜରାବଦ୍ଧ ଶାରିପକ୍ଷୀ 'ରାଧା'ର ଜୀବନର ଅନୁଭୂତିରେ ଗଳ୍ପଟି ରସାଣିତ। ପ୍ରକୃତିର ମନୋରମ ପରିବେଶରେ ସାଙ୍ଗସାଥୀ ଗହଣରେ ମୁକ୍ତ ଆକାଶରେ ବିଚରଣ କରିବାରେ ତାର ପରମ ଆନନ୍ଦ, ତେଣୁ ତାର ମୁକ୍ତି ପାଇଁ 'ଇସାରା' ପ୍ରଦାନ ଗଳ୍ପନାମର ସାର୍ଥକତା ସଂପାଦନ କରେ।

ଏହା କି ଆତ୍ମହତ୍ୟା (୧୯୩୫) କୌଣସି ଏକ ଆଦିବାସୀ ରମଣୀ ପରିବାରରେ 'ରାଣୀ' ଏକମାତ୍ର ଅଲିଅଳି କନ୍ୟା। ସ୍ନାନ ନିମିତ୍ତ ନିକଟସ୍ଥ ଝରଣାକୁଯାଇ ସ୍ନାନ କାଳରେ ଏକ ମୃଗୟା ବିହାରୀ ଯୁବକ ଦର୍ଶନରେ ଲଜ୍ଜାବଶତ ଜଳର ଗଭୀରତମ ପ୍ରଦେଶରେ ପ୍ରବେଶ ଓ ଦେହତ୍ୟାଗ - ସାରବସ୍ତୁ।

ଅଶ୍ରୁଧାରା (୧୯୩୫) ଦୁନିଆରେ ତାର ସୁଖ ଓ ଦୁଃଖ ହିଁ ଭାଗ୍ୟାନୁସାରେ ଗଢିକରନ୍ତି ଜନୈକା ସ୍ତ୍ରୀର ଦୁଃଖ ତଥା ନିର୍ଯ୍ୟାତନାର କରୁଣ ଅଭିବ୍ୟକ୍ତି ହିଁ ଗଳ୍ପଟିର ଉପଜୀବ୍ୟ ବିନ୍ଦୁ - ରାତ୍ରିରେ ହରିଅର୍ଜୁନ ପାଲା ସନ୍ଦର୍ଶନରେ ଭାବଗଳ୍ପର ଜାତ।

ଉପସଂହାର - ସମାଜ ସହିତ ସାହିତ୍ୟର ସଂପର୍କ ଅତି ନିବିଡ଼। ତେଣୁ ସମାଜର ରୀତି ନୀତି, ଆଚର ବ୍ୟବହାର ସହିତ ଯେଉଁ ସାହିତ୍ୟିକ ଯେତିକି ପରିମାଣରେ ସଂଶ୍ଳିଷ୍ଟ, ତାର ସାହିତ୍ୟ କୃତିର ମୂଲ୍ୟବୋଧ ସେତେ ଉଚ୍ଚକୋଟୀର କହିବା ବାହୁଲ୍ୟ ଯେ ଜଳନ୍ଧର ଦେବଙ୍କ ସମୟରେ ଅସ୍ପୃଶ୍ୟତା ତଥା ବିବିଧ କୁସଂସ୍କାର ବିଶେଷ ଭାବରେ ସମାଜକୁ ଗ୍ରାସ କରିଥିଲା। ଏ ସବୁର ଅସ୍ୱଚ୍ଛ ବାତାବରଣରୁ ସମାଜକୁ ମୁକ୍ତ କରିବା ତାଙ୍କ ଗଳ୍ପ ରଚନାର ପ୍ରଧାନ ଲକ୍ଷ୍ୟ ତଥା ବିଶିଷ୍ଟ ଆଭିମୁଖ୍ୟ। ଯଦିଓ ସେ ରାଜପରିବାରରେ ଜନ୍ମ ଗ୍ରହଣ କରି ଉଚ୍ଚ ସାମାଜିକ ସ୍ଥିତିରେ ଜୀବନଯାପନର ସୁଯୋଗ ଲାଭ କରିଥିଲେ। ତଥାପି ନିଜର ଆଭିଜାତ୍ୟକୁ ନେଇ କୌଣସି ପ୍ରକାର ହୀନମନ୍ୟତା ଅନ୍ୟ ଉପରେ ପ୍ରକାଶ କରିବା ତାଙ୍କର ନୀତିବିରୁଦ୍ଧ ଥିଲା। ତେଣୁ ଏ ପ୍ରକାର ଗଳ୍ପର ପରିପ୍ରକାଶ ହିଁ ତାଙ୍କର ଏକ ନୂତନ ଦୃଷ୍ଟିଭଙ୍ଗୀ, ଏକ ଅଭିନବ ପରିକଳ୍ପନା, ଏକ ନୂତନ ସୃଷ୍ଟି - ଏକ ବ୍ୟତିକ୍ରମ ତଥା ସର୍ବୋପରି ଏକ ବୈଶିଷ୍ଟ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ।

ଜାତିରେ କ୍ଷତ୍ରିୟ ହେତୁ କୌଳିକ ବୃତ୍ତି ମୃଗୟା ବା ଶିକାର କ୍ଷତ୍ରିୟୋଚିତ କର୍ମ। ଏହାର ଆଭାସ - 'ସନ୍ତନ ସ୍ନେହ', 'ଅତିଥି ସତ୍କାର', 'ଏହା କି ଆତ୍ମହତ୍ୟା', ବିବାହ ଭୋଜି'ରେ ଏହା ସୁସ୍ପଷ୍ଟ। ଜୀବନର ବାସ୍ତବ ସତ୍ୟ ଉପରେ ପ୍ରତିଷ୍ଠିତ ଘନିଷ୍ଠତା - 'କ୍ଷଣସ୍ଥାୟୀ', 'ମନ୍ତରାମର ମୁକ୍ତି', 'ମୁକ୍ତିର ଇସାରା', 'ପତିତପାବନ ଡୋରି', ଆଦି

ଗଳ୍ପ। ସମାଜରେ ବାଲ୍ୟବିବାହ ବିରୋଧୀ ତଥା ଯୁବତୀ ଓ ବିଧବା ବିବାହର ପ୍ରଚଳନ ପାଇଁ 'ଆଇନାତୁଣୀ', 'ଅଶ୍ରୁଧାରା', 'ସନ୍ତାନ ସ୍ନେହ' ଆଦି ଗଳ୍ପର ସୃଷ୍ଟି। 'ଗୌରୀ ଓ କାହ୍ନୁ', 'ପ୍ରକୃତିର ପ୍ରତିଶୋଧ' ସମାଜ ସଂସ୍କାରମୂଳକ ଗଳ୍ପ।

ଜଳନ୍ଧର ଦେବଙ୍କ ସରଳ ପ୍ରାଚୀନ ଭାଷା ସଂଯୋଜନା ରୀତି, ଭାବଗର୍ଭକ ତଥ୍ୟ ବିନ୍ୟାସ, ସାବଲୀଳ ରଚନା ଶୈଳୀ, ଗଳ୍ପ ସମୂହକୁ ସମୃଦ୍ଧ କରିଛି। ଜଳନ୍ଧରଦେବଙ୍କୁ ସାହିତ୍ୟିକ ଜୀବନ (୧୮୯୦ - ୧୯୫୦) ଦୀର୍ଘ ଷାଠିଏ ବର୍ଷ ମଧ୍ୟରେ ସେ କେତେକ ଗଳ୍ପ, କ୍ଷୁଦ୍ରଗଳ୍ପ, ରମ୍ୟରଚନା, କେତେକ ନାଟକ ଏକାଙ୍କିକା ଓ କବିତା ଆଦି ତଥା ବହୁ ପ୍ରବନ୍ଧ ରଚନା ପୂର୍ବକ ଓଡ଼ିଆ ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କରିଛନ୍ତି ବୋଲିବା ବାହୁଲ୍ୟମାତ୍ର।

ପ୍ରଥମ କଥାକାର ବ୍ୟାସକବି ସରସ୍ୱତୀ ଫକୀରମୋହନଙ୍କ ତିରୋଧାନର (୧୯୨୮) ଜଳ କ୍ଷୀରଦେବ ଗଳ୍ପ ସାହିତ୍ୟ ଜଗତରେ ସୁନାମର ଅଧିକାରୀ ହୋଇ ପାରିଥିଲେ ବିଶେଷତଃ ପଶ୍ଚିମ ଓଡ଼ିଶାରେ ନୂତନ ଦିଗନ୍ତର ସୂତ୍ରପାତ କରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବିଭିନ୍ନ ପତ୍ର ପତ୍ରିକାରେ ଗଳ୍ପମାନ ପ୍ରକାଶ ପୂର୍ବକ ଏକ ଯୁଗାନ୍ତର ସୃଷ୍ଟି କରିପାରିଥିଲେ। ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ଯେ ସୁନାମଧନ୍ୟ ସାହିତ୍ୟିକ ଲବ୍ଧପ୍ରତିଷ୍ଠ ପ୍ରାବନ୍ଧିକ, ସରଳ ଗାଳ୍ପିକ, ସୁଦକ୍ଷ ସଂପାଦକ, ସ୍ଥିତପ୍ରଜ୍ଞ ଲେଖକ, ନିର୍ଭୀକ ସମାଲୋଚକ, ବିଶିଷ୍ଟ, ସମାଜ ସଂସ୍କାରକ, ସୁଚତୁର ପ୍ରଶାସକ, ସଂଶ୍ଳିଷ୍ଟ କଳାବିତ୍ ସୁଚିନ୍ତକ ଭାବୁକ ଭାବର ବଶ କବି, ସଫଳ ନାଟ୍ୟକାର, ଆଦର୍ଶ ଗୃହସ୍ଥ। ନୂତନ ବୈଜ୍ଞାନିକ ତତ୍ତ୍ୱାନୁସନ୍ଧିତ୍ସୁ ଗବେଷକ, ଦୂରଦର୍ଶୀ ବିଧାୟକ କେବଳ ବାମଣ୍ଡାର ନୁହନ୍ତି, ସମଗ୍ର ଓଡ଼ିଶାର ତଥା ଭାରତର ଏକ ଜାତୀୟ ସଂପଦ।

ଏ ମହାନ୍ ଆତ୍ମାର ମହାପ୍ରୟାଣ ଘଟିଲା ତା୨୦-୧୦-୧୯୫୨ରେ ଦୀର୍ଘ ୮୦ ବର୍ଷ ବୟସରେ।

ଭାରତର ଲବ୍ଧପ୍ରତିଷ୍ଠ ସାହିତ୍ୟ ଅନୁଷ୍ଠାନ 'ଓଡ଼ିଶା ସାହିତ୍ୟ ଏକାଡେମୀ' ବହୁ ଆକାଙ୍କ୍ଷିତ 'ଜଳନ୍ଧରଦେବଙ୍କ ରଚନାବଳୀ' (ଦ୍ୱିତୀୟ ଖଣ୍ଡ) "ନିର୍ବାଚିତ ଗଳ୍ପମାଳା" ଏକାଡେମୀର ଶୁଭ ସୁବର୍ଣ୍ଣ ଜୟନ୍ତୀ ଅବସରରେ ପ୍ରକାଶ କରୁଥିବାରୁ ଏବଂ ଏହାର 'ମୁଖବନ୍ଧ' ରଚନାର ସୁଯୋଗ ପ୍ରଦନ କରିଥିବାରୁ ଏ ପୁସ୍ତକରେ ସଂକଳକ ଏ ମହତ୍ ଅନୁଷ୍ଠାନ ପ୍ରତି ବିନମ୍ର ପ୍ରଣତି ସହ ଗଭୀର କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ଶୁଭ ଜୟନ୍ତୀର ମଙ୍ଗଳ କାମନା ତଥା ଏ ବରେଣ୍ୟ ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି କାମନା କରୁଛି।

ଡକ୍ଟର ରାମଚନ୍ଦ୍ର ବ୍ରହ୍ମା
ସଂକଳକ

# ସୂଚୀପତ୍ର



***

# ଗୌରୀ ଓ କାହ୍ନୁ

ଗୌରୀ ଓ ନିରାଶ ଶଙ୍ଖାରୀ ଯୋଡ଼ ମଝି ଦେହରେ ମୁହଁ ଗୋଡ଼ ଧୋଇଲେ, ପୋଛି ପାଛି ହେଲେ ଅଶୋକ ବୃକ୍ଷର ଛାୟାରେ ବସିଲେ।

ଏହି ସ୍ଥାନଟି ମହାଗ୍ରାମରୁ ପାହାଡ଼କୁ ଯିବା ବାଟରୁ କିଛି ଦୂରରେ ଲୋକେ ଏଠାକୁ ଯାଆନ୍ତି ନାହିଁ। ପାହାଡ଼କୁ ଯିବା ଲୋକେ ଏହି ନାଳ ଉପର ଦେହରୁ ପାଣି ପିଅନ୍ତି।

ସ୍ଥାନଟି ନିର୍ଜନ। ଗୋଟିଏ କ୍ଷୁଦ୍ର ପ୍ରପାତ, ତଳରେ କୁଣ୍ଡ। କୁଣ୍ଡ ପ୍ରାୟ ତିନି ଚାରି ହାତ ଗଭୀର। ଏକ ବିଶ୍ୱା ପରିମାଣ ଜଳ ଅତି ସ୍ୱଚ୍ଛ ଓ ନିର୍ମଳ, ମାତ୍ର ବନ୍ୟ ପୁଷ୍ପ ଦ୍ୱାରା ଆବୃତ। ଫୁଲ ଆଡ଼େଇ ଦେଲେ, ଭିତରେ କାଚ ଧାର ପରି ସ୍ୱଚ୍ଛ ଓ ଶୀତଳ ଜଳ ପଥିକ ଓ ତୃଷାର୍ତ୍ତମାନଙ୍କ ମନ ପ୍ରାଣକୁ ଶୀତଳ କରେ।

କୁଣ୍ଡର ଉଭୟ ତୀର ଅଶୋକ ବୃକ୍ଷରେ ପୂର୍ଣ୍ଣ। ଏଠାରେ ଏତେ ଅଶୋକ ଅଛି ଯେ ଗଣାଯାଇ ନପାରେ, ଅଶୋକ ବନ ବୋଇଲେ ଅତ୍ୟୁକ୍ତି ହେବ ନାହିଁ। ଅରଣ୍ୟରେ ନଥାଇ, କୌଣସି ସହର ନିକଟରେ ଥିଲେ କବିରାଜମାନଙ୍କର ବିସ୍ତର ଅର୍ଥ ଲାଭର ଆଶା ଥିଲା। ମନୁଷ୍ୟ ସିନା ପଦାର୍ଥକୁ ଆପଣାର ପ୍ରୟୋଜନରେ ଲଗାଇବାକୁ ବାଛିନିଏ- ଅନ୍ୱେଷଣ କରେ, ପଦାର୍ଥ ପ୍ରୟୋଜନରେ ଲାଗିବ ବୋଲି ମନୁଷ୍ୟ ନିକଟକୁ ଯାଏ ନାହିଁ। ଅଶୋକ ଅରଣ୍ୟର ବୃକ୍ଷ ଅରଣ୍ୟରେ ଅଛି। ପାଣି କାନ୍ଥରେ ଏଣୁ ବିସ୍ତର ଭାବରେ ଜନ୍ମିଅଛି ଓ ସୁନ୍ଦର ବଢ଼ିଅଛି। ତୁମ୍ଭର ଆଶ୍ରୟ ନେବାର ପ୍ରୟୋଜନ ନିଅ। ଗ୍ରୀଷ୍ମକାଳୀନ ପ୍ରଚଣ୍ଡ ସୂର୍ଯ୍ୟ ରଶ୍ମିରୁ ରକ୍ଷା କରିବାକୁ ସେ ଶାଖା ପ୍ରଶାଖା ବିସ୍ତାର କରି ନିଜେ ଖରାତାପ ସହ୍ୟକରି ତୁମ୍ଭଙ୍କୁ ରକ୍ଷା କରିବାକୁ ପ୍ରସ୍ତୁତ ଅଛି।

ଗୌରୀ ଓ ନିରାଶ ବହୁ କ୍ଷଣ ନିମଗ୍ନଚିତ୍ତରେ ନିଷ୍ଚିନ୍ତରେ ଛାୟାର ଆଶ୍ରୟ ନେଲେ। କଥାବାର୍ତ୍ତା ଆଦୌ ନାହିଁ। ପର୍ବତ ଉଠିବା ଓ ଉତୁରିବା ବାଧା, ଗ୍ରୀଷ୍ମ ବାଧା ଓ ସୂର୍ଯ୍ୟ ତାପର ବାଧା ଦୂର କରିବାକୁ ସେମାନେ ସଂଯତ ହୋଇ ହୋଇ ପ୍ରାୟ ଅଧଘଣ୍ଟା କାଳ ଅତିବାହିତ କଲେ। ବେଳ ପ୍ରାୟ ଏଗାରଟା।

ଚୈତ୍ର ମାସ। ଏ ବର୍ଷ ମାସକୁ ମାସ ବର୍ଷା ହୋଇ ନଥିବାରୁ ଖରାର ତାପ ଅତି ତୀକ୍ଷ୍ଣ ଥିଲା। ପଥର ବାଟ ଅତି ଶୀଘ୍ର ତାତି ଯାଇ ଗ୍ରୀଷ୍ମବାଧାକୁ ଦ୍ୱିଗୁଣିତ କରୁଥିଲା। ଏପରି ସମୟରେ ଜଳ ନିକଟବର୍ତ୍ତୀ ନିବିଡ଼ ଛାୟାପ୍ରଦ ବୃକ୍ଷମୂଳକୁ ତ୍ୟାଗ କରିବାକୁ କାହାର ଇଚ୍ଛା ବଳେ ?

ଗୌରୀ ଓ ନିରାଶ ସମ ବୟସ୍କା- ଉଭୟଙ୍କ ବୟସ ପ୍ରାୟ ଷୋହଳ - ସତର, ଏଥିରୁ କମ୍ ନୁହେଁ। ଉଭୟେ ମହାଗ୍ରାମବାସିନୀ - ପାଉଡ଼ିଆ ଭୂୟାଁ। ଉଭୟେ ଅନୂଢ଼ା ସକାଳୁ ଉଠି ଫଳ ଅନ୍ୱେଷଣରେ ପାହାଡ଼କୁ ଯାଆନ୍ତି, ବେଳ ହେଲେ ଗୃହକୁ ଫେରନ୍ତି। ଏହା ଏମାନଙ୍କର ଦୈନନ୍ଦିନ କାର୍ଯ୍ୟ। ମହୁଲ ଏବର୍ଷ ପଛରେ ଟିକିଏ ଆସିଥିଲା, କାହିଁକି କେଜାଣି, ବର୍ତ୍ତମାନଯାଏ ମହୁଲ ପଡୁଥାଏ। କେନ୍ଦୁ ଗୋଟିଏ ଗୋଟିଏ ପାଚିବାକୁ ଆରମ୍ଭ କରିଛି। ଚାର ମଧ୍ୟ ପାଚୁଅଛି। ଗ୍ରୀଷ୍ମକାଳରେ ଏହି ତିନିଗୋଟି ପଦାର୍ଥର ଅନ୍ୱେଷଣ ଓ ସଂଗ୍ରହ ପାର୍ବତୀୟ ଗ୍ରାମ୍ୟ ଗରିବମାନଙ୍କର ନିତାନ୍ତ ଆବଶ୍ୟକ। ଯେଉଁ ବ୍ୟକ୍ତି ବଡ଼ି ଭୋରରୁ ପର୍ବତ ଚଢ଼ି ପାରିଲା ତାର ବେଶି ଲାଭ। ଏଣୁ ପ୍ରତ୍ୟୁଷରେ ଗୃହତ୍ୟାଗ କରିଥାନ୍ତି। ଗୌରୀ ଓ ନିରାଶ ମଧ୍ୟ ବଡ଼ି ଭୋରରୁ ଯାଇଥିଲେ। ଚାର, ମହୁଲ, କେନ୍ଦୁ ବୋଝେ ବୋଝେ ତୋଳି ଏଠାକୁ ଫେରିଥିଲେ, ଏବଂ ଗୋଡ଼ ହାତ ମୁହଁ ଧୋଇ ପେଟେ ଲେଖାଏଁ ପାଣି ପିଇ ବିଶ୍ରାମ ନେଲେ।

ବିଶ୍ରାମ ଯଥେଷ୍ଟ ହେଲା ବୋଲି ନିରାଶ ମନେକଲା, କହିଲା ଗୌରୀ ଉଠ ଯିବା। ଗାଁ ଅଧକୋଶ ଅଛି। ଖରା ମାଡ଼ି ଆସୁଛି। ସବୁସୁଖ ଯାକ ବାହାରି ଯିବଟି।

ଗୌରୀ - ମୁଁ ତ ଆଜି ଯିବି ନାହିଁ।

ନିରାଶ - କାହିଁକି ? କ'ଣ ଖାଇବୁ, ଏଠି କ'ଣ କରିବୁ।

ଗୌରୀ - ସକାଳେ ତୁ ପରା ଟିକିଏ ଆଗରୁ ଆସିଲୁ। ମୁଁ ଘରୁ ଭାତ ଆଣି ପଥର ତଳେ ରଖି ଦେଇଛି। ଏଠି ଗାଧୋଇବି, ଭାତ ଖାଇବି ନିଶ୍ଚିନ୍ତରେ ଶୋଇବି। ମହୁଲ, କେନ୍ଦୁ, ଚାର ପଥର ଉପରେ ଶୁଖାଇ ଦେବି, ବେଳ ବୁଡ଼ିକୁ ଘରକୁ ଯିବି। ମା ଓ ସାନଭାଇ ଇତି ଗାଁକୁ ଧାନ ଆଣିବାକୁ ଯାଇଛନ୍ତି। ସନ୍ଧ୍ୟାକୁ ଘରକୁ ଫେରିବେ। ଘରେ ମୋର ଆଉ କି କାମ ? ଏହା ଠାରୁ କ'ଣ ଘରେ ବେଶି ସୁଖ ?

ନିରାଶ - ମୋତେ କହିଲୁ ନାହିଁ ମୁଁ ମଧ ଭାତ ଆଣି ଥାଚି, ମୋର ଘରେ କାମ ଅଛି ମୁଁ ଯିବି। ତୁ ତେବେ ଥା।

ନିରାଶ ବୋଝ ମୁଣ୍ଡେଇ ଏକାକିନୀ ଗ୍ରାମ ଅଭିମୁଖରେ ଗମନ କଲା। ଗୌରୀ ମହୁଲ ଗଛର କେନ୍ଦୁତକ ପଥର ଉପରେ ପରିପାଟି ସହ ଶୁଖାଇ ଦେଲା। କୁଣ୍ଡରେ ସ୍ନାନ କଲା, ଭାତ ଖାଇଲା, ପଥର ଉପରେ ଟିକିଏ ବସିଲା। କାଉ ଗୋଟିଏ ଅଶୋକ ଶାଖା ଉପରେ ବସି କାଆ, କାଆ ରାବି ଦେଲା। ଗୌରୀ କହିଲା କି ସୁଖ କଥା କହିବୁରେ କାଉ, ମୋ ଆଗରେ ଆସି ବୋବାଉଛୁ? ଅନ୍ନଲୋଲୁପ କାଉ ଶୁଭ ସମ୍ବାଦ ଦେବାକୁ ତ ଆସି ନାହିଁ, ଭାତ କେତୋଟିର ଆଶାରେ ବୋବାଉଥିଲା। ଗୌରୀ ଟିକିଏ ଅନ୍ତର ହେଲେ ନିଦ୍ରାଗଲେ ତାର ସ୍ୱାର୍ଥ ସିଦ୍ଧ ହେବ। ଗୌରୀର ଉଠିବା ଦେଖି କା କା କରୁଥିଲା।

ଗୌରୀ କୁଣ୍ଡ ନିକଟରେ ଗୋଟିଏ ସମତଳ ପଥର ଉପରେ ଶୋଇଲା ନିଜର ବାମବାହୁକୁ ଉପାଧାନ କରି ଅଣେଇ ହୋଇ ସେ ପ୍ରପାତର ଶୋଭା ଦେଖୁଥିଲା। କଳ କଳ ଧ୍ୱନି କରି କ୍ଷୁଦ୍ର ପ୍ରସ୍ରବଣ ପଡୁଥିଲା। ସମୟ ସମୟରେ ଗୋଟିଏ ଗୋଟିଏ ପଳାସ ଫୁଲ ସ୍ରୋତରେ ଭାସି ଆସି କୁଣ୍ଡରେ ପଡ଼େ, ଭିତରକୁ ବୁଡ଼ି ଯାଇ ଡବ ଡବ ଶବ୍ଦକରେ ସଙ୍ଗେ ସଙ୍ଗେ ନିକଟବର୍ତ୍ତୀ କ୍ଷୁଦ୍ର ଫୁଲଗୁଡ଼ିକୁ ପ୍ରପାତ ତଳକୁ ଟାଣି ଆଣେ। ଏହି ଦୃଶ୍ୟ ଗୌରୀ ଏକ ଦୃଷ୍ଟିରେ ଦେଖୁଥିଲା। ଏହି ଶବ୍ଦ ତାକୁ ମୁଗ୍ଧ କରୁଥିଲା। ଶୋଇ ପଡ଼ିଲା କି ଚେତିଥିଲା ଥରେ କି ଶବ୍ଦକୁ ଲକ୍ଷକରି ସେ ଉଠି କାନେଇଲା ପୁଣି ଶୋଇଲା। ଶୀତଳ ବାୟୁ ନିଦ୍ରା ଘେନି ଆସିଲା ଗୌରୀ ଏକାବେଳକେ ନିଦ୍ରା ମଗ୍ନ।

ପ୍ରାୟ ଅଧ ଘଣ୍ଟା ଅତୀତ ହେଲା। ଅତି ଦୂରରେ ଟିକିଏ ବଂଶୀଧ୍ୱନି ଶୁଣାଗଲା। କ୍ରମେ ମଇଁଷି ଗଳଘଣ୍ଟାର ଗୁରୁ ଗୁରୁ ଶବ୍ଦ ଶୁଣାଗଲା। ଗୌରୀ ନିଦ୍ରିତା।

କାହ୍ନୁ ତଳ ଦହକୁ ମଇଁଷି ଆଣି ପାଣିରେ ପକାଇଦେଲା। ମଇଁଷିମାନଙ୍କୁ ଗାଧୋଇଦେବା ସଙ୍ଗେ ସଙ୍ଗେ ନିଜେ ଗାଧୋଇଲା। ପୋଛାପାଛି ହୋଇ ନିଜର ଭାତ ଧରି ଉପର ଦହକୁ ଖାଇବା ନିମନ୍ତେ ଗଲା। ଏ କ'ଣ? ପଥର ଉପରେ ଜଣେ ସ୍ତ୍ରୀ ଲୋକ ଶୋଇଛି। ପାଣି ପାଖରେ ଭାତ ରଖିଦେଇ ସେ ତା ନିକଟକୁ ଗଲା। ଗୌର ତା ଦେହରେ ଆନନ୍ଦ ସ୍ରୋତ ବହିଗଲା ମନରେ ସେ ଅପୂର୍ବ ଆନନ୍ଦ

ଅନୁଭବ କଲା । ତାର ବାଲ୍ୟ ସହଚରୀ ଗୌରୀ । ଗୌରୀର ଏହା କପଟ ନିଦ୍ରା, ନା ପ୍ରକୃତରେ ଶୋଇ ପଡ଼ିଛି । ତୁନି ହୋଇ ସେ ଗୁଡ଼ିଏ ଅଶୋକ ଫୁଲ ତିଳଫୁଲ ଭୁଇଁକୁରୁଆଁ ଆଉ କେତେ ଫୁଲ ତୋଳିଲା । ଗୌରୀର ଘରି ପାଖରେ ଫୁଲସବୁ ଗଦାଇ ଦେଲା । ପୁଣି ଗୋଟିଏ ତିଳ ଫୁଲର ସ୍ତବକ ଧରି ଗୌରୀର କପାଳରେ ଅଳ୍ପ ଅଳ୍ପ ସ୍ପର୍ଶ କଲା । ଗୌରୀ ହାତରେ ଆଡ଼େଇ ଦେଲା । ପୁଣି ଦେଲା ପୁଣି ଆଡ଼େଇ ଦେଲା । ଆଃ ମାଛି ଗୁଡ଼ାକ ବଡ଼ ଦୁଃଖ ଦେଲେ । ପୁଣି ଶୋଇଲା । କାହ୍ନୁ ତା କାନରେ ଫୁଲ ଗୁଚ୍ଛ ପିନ୍ଧାଇ ଦେଲା । ଗୌରୀ ଉଠି ପଡ଼ିଲା କାହ୍ନୁ ପଥର ତଳେ ଲୁଚି ରହିଲା । ଗୌରୀ ଉଠି ଦେଖେ ଘରିପାଖରେ ଫୁଲ । କିଏ ଏତେ ଫୁଲ ରଖିଲା ? ପଛ ପଟରେ ଦେଖେ ପଥର ତଳେ କାହ୍ନୁ । ତୁ ଏଠିକି କାହୁଁ ଆସିଲୁ ମୋର ନିଦ ଭାଙ୍ଗିବାକୁ ? କାହ୍ନୁ କହିଲା ତୁ କ'ଣ ଭାତ ଖାଇଲୁଣି, ଆଜି ଏଠି କାହିଁକି ? ଗୌରୀ ତାର ସକାଳ ଭ୍ରମଣ ଫଳ ସଞ୍ଚୟ କଥା ଯଥାଯଥ ରୂପେ ବର୍ଣ୍ଣନା କଲା ।

କାହ୍ନୁ ନିକଟରେ ବସିଲା, ଗୌରୀର ହାତ ଧରି କହିଲା, ଆଜି ବଡ଼ ସୁଯୋଗରେ ଏଠାରେ ଦେଖାହେଲା । ହୃଦୟ ଫିଟାଇ କଥା ହେବା ।

ଗୌରୀ କହିଲା କେବେ କଥା ହେଉ ନାହିଁ ଯେ, ଆଜି କଥା ହେବାର ସୁଯୋଗ ମିଳିଲା ? କାହ୍ନୁ କହିଲା ଏ ସୁଯୋଗ କେବେ ମିଳି ନଥିଲା ବୋଲି ବିଘର

ଗୌରୀ - ତେବେ ତୋର ମନ ଫିଟାଇ କହ ।

କାହ୍ନୁ - ତୁ କଣ ମୋର ମନ କଥା ଜାଣୁ ନାହିଁ ଯେ କହିବି ?

ଗୌରୀ - ମୁଁ ତୋର ମନକଥା ଜାଣେ ତେବେ ତୋ ନିଜ ମୁହଁରେ ସ୍ପଷ୍ଟ କରି କହ ।

କାହ୍ନୁ - ଦିହେଁଯାକ ଏକଗ୍ରାମର । ତୁ ବାଲ୍ୟ କାଳର ସହଚରୀ ଖେଳର ସଙ୍ଗିନୀ । ବାଲ୍ୟକାଳରୁ ମୁଁ ତୋତେ ସୁଖ ପାଏଁ । ଯେପରି ମୋତେ ସୁଖ ପାଉ ସେହିପରି । ତୋ ହୃଦୟର କଥା ମୋତେ ଗୁପ୍ତ ନୁହେଁ, ମୋ ହୃଦୟର କଥା ତୋତେ ବି ଗୁପ୍ତ ନୁହେଁ । ମୁଁ ଆଶା କରିଛି ତୁ ମୋର ଘରଣୀ ହେବୁ । ମୁଁ ଏଥିନିମନ୍ତେ ଆଜିଯାଏ ବିବାହ କରିନାହିଁ । ତୋର ମନର କଥା କହ ।

ଗୌରୀ - ଯାହା କହିଲୁ ସତ । ପିଲାଦିନର ଆଜିଯାଏ ଭାଇ ଭଉଣୀ ପରି ଖେଳା କରି ଦିନ ନେଲେ । ଏବେ ସେପରି ସ୍ୱଚ୍ଛନ୍ଦରେ କଥାବାର୍ତ୍ତା ହେଲେ, ଦଣ୍ଡେ

ଏକାଠି ବସିଲେ ଲୋକହସା ହେବା ସତ। ଆମ୍ଭମାନଙ୍କ ମଧ୍ୟରେ ସେପରି ସ୍ନେହ ଥାଉ। ତୁ ଗୌଡୁଣୀ ବିବାହ କର। ମୁଁ ମୋର ଜାତି ପୁଅ ପାଇଲେ ବିବାହ ହେବି।

କାହ୍ନୁ - ଗୌଡ଼ମାନେ ଛୁଆ କନିଆଁ ବିବାହ କରନ୍ତି। ଅନ୍ୟ ବିବାହରେ ମୋର ଇଚ୍ଛାଥିଲେ କେତେ କାଳରୁ ବିବାହ କରି ସାରନ୍ତିନି। ତୋର ଆଶାରେ ବସି ରହିଛି। ତୁ ଏବେ ନିରାଶ କରୁଛୁ।

ଗୌରୀ - ତ, ତୁ ମୋରି ଆଶାରେ ଅଛୁ ଏ ଆଶା ବୃଥା। ତୁ ଗୌଡ଼ ମୁଁ ପାଉଡ଼ିଆ ତୋର ମୋର ବିବାହ ହେବ କିପରି ? ତୁ ଜାତିରୁ ଯିବୁ ମୁଁ ଜାତିରୁ ଯିବି, ପଛକୁ କିଛି ଭଲ ହେବ ନାହିଁ। ଏ ଆଶା ଛାଡ଼ କାହ୍ନୁ ଏ ଆଶା ଛାଡ଼।

କାହ୍ନୁ - ଜାତିରେ ମୋର ପ୍ରୟୋଜନ ନାହିଁ। ତୋର ଯେଉଁ ଜାତି, ମୋର ସେହି ଜାତି। ତୋର ଗତିରେ ମୋର ଗତି ମୁଁ ତୋର ଭିନ୍ନ ଅନ୍ୟ କାହାକୁ ଦେଖିବି ନାହିଁ, ରଖିବି ନାହିଁ। ଦିହେଁଯାକ ଘର କରି ରହିବା। ଜାତିରେ ନମିଶିଲେ କ୍ଷତି କ'ଣ ?

ଗୌରୀ - ଦେଖ ଏତେବେଳେ ବୁଝିବାକୁ ନାହିଁ, ପଛେ ମନରେ କଷ୍ଟ ପାଇବୁ, ମୋତେ ଛାଡ଼ିବୁ ମୁଁ ଅନସ୍ତା ହେବ।

କାହ୍ନୁ - ନା ନା ତୋର ଭୟର କୌଣସି କାରଣ ନାହିଁ। ଏହା କହି କାହ୍ନୁ ତଳକୁ ଓହ୍ଲାଇ ପଡ଼ିଲା, ପାଣି ଆଞ୍ଜୁଳାଏ ଧରି ଶପଥ କଲା। ଗୌରୀ କହିଲା ଶପଥରେ କି କାମ ? ତୋର ଯେବେ କଥା ସତ ତେବେ ହେଲା। ମୋର ଅନିଷ୍ଟ ପଛେ ହେଉ ତୋର କଥା ରଖିବି।

କାହ୍ନୁର ଗୋଟାଏ ଗୋଟାଏ ପୋହଳାମାଳ ଥିଲା, ତାହା ସେ ଫିଟାଇ ଗୌରୀ ବେକରେ ପିନ୍ଧାଇ ଦେଲା। ଗୌରୀ ତାର ହାତର ପିଉଳ ମୁଦିଟି କାହ୍ନୁକୁ ପିନ୍ଧାଇ ଦେଲା।

(୨)

ବିଞ୍ଜବାହାଳ ପ୍ରକାଣ୍ଡ ପାଉଡ଼ିଆ ଗ୍ରାମ। ନିକଟବର୍ତ୍ତୀ ପାହାଡ଼ରେ ପାଉଡ଼ିଆମାନେ ରମା କାଟି ପୋଡ଼ାଇ ସେଠାରେ ଝୁଲଙ୍ଗା, ମକା, କାକୁଡ଼ି, ମାଣ୍ଡିଆ, କୁଶଳା ପ୍ରଭୃତି ଫସଲ ରୋପଣ କରିବାରେ ବ୍ୟସ୍ତ। ବର୍ଷ ମଧ୍ୟରେ ଏପରି ପରିଶ୍ରମର

ଦିନ ପାଉଡ଼ିଆମାନଙ୍କର ଆଉ ନାହିଁ। ଯେଉଁ ଆତ୍ମୀୟ ଆତ୍ମୀୟା ବନ୍ଧୁମାନେ ନିଜେ ରମାକାଟି ନଥାନ୍ତି, ସେମାନେ ନିଜେ ଯାଇ ନିଜର ଆତ୍ମୀୟମାନଙ୍କୁ ସାହାଯ୍ୟ କରନ୍ତି। ଆଦିବାସୀମାନଙ୍କର ଇଦୃଶ ସହାନୁଭୂତି ସ୍ୱାଭାବିକ। ସେମାନେ ବନ୍ଧୁଦ୍ୱାରକୁ ଯାଇ କେବଳ ଅନ୍ନ ଧ୍ୱଂସ କରନ୍ତି ନାହିଁ। ସେମାନେ ଯେତିକି ଖାଅନ୍ତି, ତହିଁରୁ ବଳି ପରିଶ୍ରମ କରି ଗୃହସ୍ଥର ସାହାଯ୍ୟ କରନ୍ତି।

ଗୌରୀର ମାମୁଁ ଘର ବିଞ୍ଜବାହାଳ ଗ୍ରାମରେ। ମାତାର ଅନୁମତି କ୍ରମେ ଗୌରୀ ଏହି ଗ୍ରାମକୁ ଗଲା। କାର୍ତ୍ତିକ ମାର୍ଗଶିର ଯାଏ ମାମୁ ଘରେ ରହିବ। ଗ୍ରାମଟି ବଡ଼ ସେଠାରେ ଅନେକ ପାଉଡ଼ିଆଙ୍କର ବସତି, ଅନେକ ଯୁବକ ଯୁବତୀ ଅଛନ୍ତି, ବଡ଼ ନାଚ ଘର ଅଛି, ପ୍ରତି ରାତ୍ରରେ ଋଙ୍ଗୁ ନାଚହୁଏ। ନିକଟବର୍ତ୍ତୀ ଗ୍ରାମମାନଙ୍କର ଯୁବକମାନେ ମଧ କେବେ କେବେ ଋଙ୍ଗୁ ନାଚ କରିବାକୁ ଆସନ୍ତି। ଯୁବକମାନଙ୍କ ସହିତ ଗୌରୀ ଋରି ଛ ମାସ ଋଙ୍ଗୁ ନାଚ କରି ବା ଅନେକଙ୍କ ସହିତ ଦେଖା ସାକ୍ଷାତ ହେବ। ଗୌରୀର ଗୋଟିଏ ଭଲ ସ୍ୱାମୀ ମିଳିବାର ଖୁବ ସମ୍ଭବ। ମହାଗ୍ରାମରେ ନାଚଘର ନାହିଁ। ଯୁବକ ଯୁବତୀ ଋଙ୍ଗୁନାଚ କରିବାର ବେଶୀ ସୁବିଧା ନାହିଁ। ଗୌରୀର ମା ଭାବିଲା ମହାଗ୍ରାମରେ ଗୌରୀ ସବୁ ଦିନେ ଥିଲେ ଭଲ ବର ମିଳିବା ଆଶା ଅତି କମ୍। ମାମୁ ଘରକୁ ଯାଇ ଛ ମାସ ରହିଲେ ଦୈନିକ ଋଙ୍ଗୁ ନାଚ କଲେ ଗୌରୀ ପକ୍ଷରେ ମଙ୍ଗଳ ଜନକ। ଗୌରୀ ମାତୁଳାଳୟକୁ ଗଲା। ଗୌରୀର ମା ନିଶ୍ଚିନ୍ତରେ ରହିଲା।

(୩)

ଜ୍ୟେଷ୍ଠ ମାସ ହେଲା। ପାଣି ଦୁଇ ଋରି ଅସରା ବର୍ଷିଲା। ନାଳମାନଙ୍କରେ କିଛି କିଛି ପାଣି ଜମା ହେଲା। ନୂଆଁ ଘାସ କଁଳିଲା। ମଇଁଷିମାନଙ୍କୁ ପାହାଡ଼ିଆ ବାଉଁଶ ବଣକୁ ନେଲେ କଅଁଳ ବାଉଁଶ ପତ୍ର ନେପେଇ ବା ପନାସି କରଡ଼ ଖାଇ ପୁଷ୍ଟ ହେବେ, ବେଶୀ ଦୁଧ ଦେବେ। ମଇଁଷି କଅଁଳାଇବା ସମୟ ହେବା ଆଗରୁ କାହ୍ନୁ ତାର ମଇଁଷି ପଲକ ବିଞ୍ଜବାହାଳ ନିକଟବର୍ତ୍ତୀ ହନୁଚୂଆ ଜଙ୍ଗଲରେ ନେଇ ରଖିଲା। ଗୋଟିଏ ନାରୀ ଘର ତିଆରି କରି ରହିଲା, ତାର ଗ୍ରାମରୁ କୌଣସି ସହକାରୀ ଗୌଡ଼ ନେଇ ନାହିଁ। ସେ ମନେ କଲା ବିଞ୍ଜବାହାଲର କୌଣସି ଗଉଡ଼କୁ ନିଯୁକ୍ତ କଲେ ଭଲ ହେବ। ତାର ସହକାରୀ ଗୌଡ଼ ନିମନ୍ତେ ମଧ ଦୁଇ ବଖରା ଘର ବନାଇଲା।

ଗୌରୀ ତାର ମାମୁଁ ଘରେ ଥିଲା । ବିରିଙ୍ଗା କାମ ସରିଲା ପରେ ଗୌରୀ ସ୍ୱଗୃହକୁ ଯିବାର ଇଚ୍ଛା ତାର ମାମୁକୁ ଜଣାଇଲା ଗୌରୀର ମାମୁ ସ୍ୱୀକୃତି ହେଲା ଗୌରୀ ନିଜ ଘରକୁ ଯାଉ, ପୁଣି ଶୀତ କାଳରେ ଆସିବ । ବୁଣା ବୁଣି ବେଳେ ତା ଘରେ ଗୌରୀ ରହିବାରୁ ତାର ବିଶେଷ ଉପକାର ହୋଇଥିଲା ବୋଲି ସେ ମନେ କଲା । ଫସଲ ତୋଳିଲାବେଳେ ଗୌରୀ ଅବଶ୍ୟ ଆସିବ ବୋଲି ତାର ଧାରଣା ଏବଂ ସେତେବେଳେ ଗୌରୀ ନିମନ୍ତେ ଗୋଟିଏ ଭଲବର ଖଞ୍ଜି ପାରିବ ବୋଲି ତାର ଆଶା । ଗୌରୀର ପାରିଶ୍ରମିକ ଦେଖି ଏବଂ ତାର ଆଚରଣରେ ତାର ମାମୁ ବଡ଼ ସନ୍ତୁଷ୍ଟ । ଗଲା ବେଳେ ଖଣ୍ଡେ ଲୁଗା ଦେଲା ଆଉ କିଛି ଚାଉଳ, କିଛି ବିରି, କିଛି ମାଣ୍ଡିଆ ଦେଇ ପଠାଇ ଦେଲା ।

ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ଯିବାବେଳେ ସର୍ବଦା ସଙ୍ଗୀର ଦରକାର, ଏପରି ନୁହେ କି ସ୍ତ୍ରୀ କି ପୁରୁଷ ଏକାକୀ ମହାଅରଣ୍ୟରେ ଚାରି ପାଞ୍ଚ କ୍ରୋଶବର୍ତ୍ତୀ ଗ୍ରାମକୁ ଚାଲିଯାନ୍ତି । ଗୌରୀ ମାମୁ ତାହା ସଙ୍ଗରେ ଯିବାକୁ କାହାକୁ ନିଯୁକ୍ତ କଲା ନାହିଁ । ମନେ କଲା ଗୌରୀ କାହାରି ସଙ୍ଗରେ ଯିବ, ଏକାକିନୀ ମଧ୍ୟ ଯାଇ ପାରିବ । ତାର ଧାରଣା ଗୌରୀ ଖୁବ ଭୟଶୂନ୍ୟ । ତାର ଶାରୀରିକ ବଳ ଯଥେଷ୍ଟ । ତା ପକ୍ଷରେ ଗ୍ରାମରୁ ଗ୍ରାମାନ୍ତରକୁ ଯିବା କିଛି ଅସମ୍ଭବ ନୁହେଁ । ଗୌରୀ ଗଲା ।

ପାଞ୍ଚ ମାସ ଗଲା ଝୁଲୁଙ୍ଗା ତୋଳିବା ବେଳେ ଗୌରୀ ଆସିଲା ନାହିଁ । ତା ମାମୁ ଭାବିଲା ଗୌରୀ କେଉଁ ଆଡ଼େ ଗଲା, ଆସି ପାରିଲା ନାହିଁ ।

କାହ୍ନୁ ଓ ଗୌରୀ ଗୋଟିଏ ନାରୀ ଘରେ ବାସ କଲେ । ତାଙ୍କର ବିବାହ ତ ସଙ୍ଖାରି ଜଳ ନିକଟରେ ସମାପନ ହୋଇଥିଲା । ଉଭୟେ ବଡ଼ ସୁଖରେ ପତି ପତ୍ନୀ ଭାବରେ ବାସ କଲେ । ଗୌରୀ ପାଉଡ଼ିଆ ଝିଅ ହେଲେ ମଧ୍ୟ ଗଉଡ଼ଙ୍କ ସଙ୍ଗରେ ରହି ଖତ ପକାଇବା, ଗୁହାଳ ସଫା କରିବାର ତାର ଅଭ୍ୟାସ ଥିଲା । ସେ ସୁନ୍ଦର ରୂପେ ଗୋଠର କାମ ନିର୍ବାହ କରୁଥାଏ ।

(୪)

ମାର୍ଗଶିର ମାସରେ ଗୌରୀର ଭାଇ ନନ୍ଦ ମାମୁଘରକୁ ଗଲା । ଜାଣିଲା ଗୌରୀ ମାମୁଘରେ ନାହିଁ - ଆଷାଢ଼ ମାସରୁ ଚାଲି ଯାଇଛି । ସେମାନେ ଅନୁସନ୍ଧାନରୁ ଜାଣିଲେ ଗୌରୀ ଓ କାହ୍ନୁ ପତି ପତ୍ନୀ ଭାବରେ ବାସ କରୁଅଛନ୍ତି ।

ଗୌରୀର ପାଞ୍ଚ ମାସର ଗର୍ଭ। ମାମୁ ଭାଇ ଚିନ୍ତା କଲେ କଣ କରିବେ। ଭାବିଲେ ବିବାହ ନିଷ୍ପ୍ରୟୋଜନ।

କାହ୍ନୁ ଓ ଗୌରୀ ଅରଣ୍ୟରେ ମଇଁଷି ଧରି ନିର୍ବିବାଦରେ ରହିଲେ। କାହ୍ନୁର ବଖରାକ ଅଲଗା, ତାର ପାଳିଆର ବଖରାକ ଅଲଗା। ଦୁଇ ପରିବାର ମଇଁଷି ଚରାଇ ସୁଖରେ ବାସ କଲେ।

କାହ୍ନୁ ନଥାଏ ଗୌରୀ ପ୍ରସବ କଲା। ସାହାଯ୍ୟ କରିବାକୁ କେହି ନାହିଁ। ପାଳିଆର ସ୍ତ୍ରୀ ଦୁଃଖୀ କହିଲା, ଭୂୟାଁଣୀ ଛୁଆଳିକୁ ସେ କିପରି ଛୁଇଁବ। ଗୌରୀ ନୂତନ ପ୍ରସୂତି, ପୂର୍ବରୁ ଜାଣି ପାରିଲା ନାହିଁ। କୌଣସି ଗ୍ରାମକୁ ଯାଇଥିଲେ ସେ ସାହାଯ୍ୟ ପାଇଥାନ୍ତା, ତାହା ସେ କଲା ନାହିଁ।

ଗୌରୀ ପୁତ୍ର ମୁଖ ଦର୍ଶନ କଲା। ସମସ୍ତ ଯନ୍ତ୍ରଣା ପାଶୋରି ଦେଲା। ପୁତ୍ର ତାର ଅମୂଲ୍ୟ ନିଧି, ତାହା ପାଇଲା। ଗତ ଦୁଃଖକୁ କିଏ ସ୍ମରଣ କରେ? କାହ୍ନୁ ଆସିଲା ପୁଅକୁ ଦେଖି ବଡ଼ ଆନନ୍ଦ ହେଲା। ଭାବିଲା, ଜଗତରେ ଜାତି ଜାତି ବୋଲି ଲୋକେ କହନ୍ତି, ଏଥିରେ କ'ଣ ଅଛି? ମୁଁ ଭୂୟାଁଣୀ ରଖିଲି ମୋର କି ପେଟ ପୋଷା ଯାଉନାହିଁ? ମୋତେ କି ମୋର ଗୌରୀ ଭାତ ମୁଠାଏ କରି ଖୁଆଉ ନାହିଁ? ହାତ ପା କରୁ ନାହିଁ? ଘର ରକ୍ଷା କରୁ ନାହିଁ? ଗୌରୀ ପରି ସୁଘରଣୀ ମିଳିବ ନାହିଁ। ପୁଣି ପଙ୍କରୁ ଜାତ ହେଲା ପଦ୍ମ ଫୁଲ ସେ। ମୋର ଆଉ କି ଦୁଃଖ ଅଛି? ମୋ ଭଳିଆ ଗଉଡ଼ପିଲା ମୋ ଠାରୁ ବଳି କିଏ ସୁଖରେ ଅଛି? ଗଉଡୁଣୀଟାଏ ବିଭାହୋଇ ଥିଲେ କି ମୋର ଅଧିକ ସୁଖ ହୋଇଥାନ୍ତା? ବଡ଼ ସୁଖରେ କାହ୍ନୁ ଓ ଗୌରୀ ନବଜାତ ଶିଶୁକୁ ସଙ୍ଗରେ ଘେନି ମହାରଣ୍ୟରେ ମଇଁଷି ଚରାଇ ଦିନ ଯାପନ କରୁଥିଲେ।

"ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନିଚ"

ସବୁ ଦିନ ଏକ ଭାବରେ ଯାଏ ନାହିଁ। ଗୌରୀର ସ୍ୱପ୍ନ ଭାଙ୍ଗିଗଲା। କାହ୍ନୁ ପାଞ୍ଚ ସାତ ଦିନ ନିମନ୍ତେ ଗ୍ରାମାନ୍ତରକୁ ଯାଇଥିଲା। ଦିନେ ହଠାତ୍ ଗୌରୀର ପୁଅକୁ ଜ୍ୱର ହେଲା। ଗ୍ରାମରୁ ଗୋଠ ଛଅ ସାତ ମାଇଲ ପୁତ୍ରର ଅବସ୍ଥା କିଏ କରିବ? କାହାର ଆଶ୍ରୟ ନେବ? ମନେ କଲା ସେ ଛୁଆକୁ ଦୁଃଖୀ ଜିମା ଦେଇ ଔଷଧ ଆଣିବାକୁ ଯିବ। ଦୁଃଖୀ କହିଲା ସେ ଛୁଆକୁ ଦେଖିବ ମାତ୍ର ଛୁଇଁବ ନାହିଁ କିମ୍ବା ଖୁଆଇ ପାରିବ ନାହିଁ। ଗୌରୀ ଅଗତ୍ୟା ଛୁଆକୁ ଧରି ଏକାକିନୀ ନିଜର ପିତ୍ରାଳୟକୁ

ଗଲା, ସେଠାରେ ଯାଇ ପୁତ୍ରର ଚିକିତ୍ସା କରାଇଲା, ମାତ୍ର କିଛି ଉପକାର ହେଲାନାହିଁ। ଶିଶୁର ପ୍ରାଣବାୟୁ ଅନ୍ତର୍ହିତ ହେଲା - ଗୌରୀର ଆଶା ଭରସା ସବୁ ବୁଡ଼ିଲା। ସେ ଦୁସ୍ତର ଶୋକ ସାଗରରେ ଭାସମାନ ହେଲା। ପୁତ୍ର ଶୋକ ହେତୁ ଗୌରୀ ଅନେକ ଦିନ ତାର ପିତ୍ରାଳୟରେ ରହିଲା। କାହ୍ନୁ ଗୋଠରେ ଥାଏ, ମଝିରେ ମଝିରେ ଗୌରୀକୁ ଦେଖିବାକୁ ଆସେ।

ଅନେକ ଦିନ ପରେ ଗୌରୀ ଗୋଠକୁ ଗଲା। ସେତେବେଳେ କାହ୍ନୁ ଦୁଃଖୀଘରୁ ଭାତ ଖାଉଥାଏ। କିଛି ଦିନ ଗୌରୀ ମଧ୍ୟ ଦୁଃଖୀ ଘରୁ ଭାତ ଖାଇଲା। ଗୌରୀ ପୁଣି ନିଜର ଗୃହସ୍ଥଳୀ ଆରମ୍ଭ କଲାବେଳେ କାହ୍ନୁ କହିଲା ଦୁଃଖୀତ ଭାତ ରାନ୍ଧି ଦେଉଛି, ସ୍ୱତନ୍ତ୍ର ରନ୍ଧା କରିବାର କି ଦରକାର ? ସରଳ ବିଶ୍ୱାସରେ ଗୌରୀ ସ୍ୱୀକାର କଲା। ଅନେକ ଦିନ ଚାଲିଗଲା।

(୫)

ଇତି ଗ୍ରାମରେ ଗଉଡ଼ଙ୍କ ଜାତୀୟ ସଭା ହେବାର ସ୍ଥିର ହେଲା। ଚାରି ଛଅ ଦିନ ସଭା ହେବ ଦୈନିକ ଭୋଜି ହେବ। କିଏ ଜାତିରେ ମିଶିବ କିଏ ଜାତିରୁ ଅନ୍ତର ହେବ। କେତେଟା ରାଣ୍ଡ ଅନ୍ୟ ପତି କରିବେ, କେତେଟଙ୍କା ମହାକୁଳ ଖାଇଲା, କେତେଟଙ୍କା ଖୁଣ୍ଟିଆ ଛପାଇ ରଖିଛି, ଏଥିର ବିଚାର ହେବ ଇତ୍ୟାଦି। କାହ୍ନୁର ଆଗ୍ରହ ବଳିଲା ସେ ଦେଖିବାକୁ ଯିବ। ଗୌରୀ ସ୍ୱୀକୃତି ଦେଲା। କାହ୍ନୁ ଗଉଡ଼ ସଭା ଦେଖିବାକୁ ଗଲା। ଗୌରୀ ପିତ୍ରାଳୟକୁ ଗଲା। ପାଳିଆ ଜିମା ମଇଁଷି ରହିଲେ। ଦହି ଘିଅ ଦୁଃଖୀ ରଖିବାର ସ୍ଥିର ହେଲା।

କାହ୍ନୁର ଭାଇ ଓ ପିତା ପ୍ରଭୃତି କାହ୍ନୁକୁ ଜାତିରେ ମିଶାଇବାକୁ ପ୍ରସ୍ତାବ କଲେ। କାହ୍ନୁ ରାଜି ହେଲା। ଗଉଡ଼ ସଭାରେ ଏକଥା ପଡ଼ିବ, ବ୍ରାହ୍ମଣ ବ୍ୟବସ୍ଥା ଦେଲେ କାହ୍ନୁ ଜାତିରେ ମିଶିବ ଏହା ସ୍ଥିର ହେଲା। ଗୌରୀକୁ ଜଣା ନାହିଁ ସେ ଆପଣା ପିତ୍ରାଳୟରେ ଅଛି।

ଗଉଡ଼ ସଭା ଓ ଭୋଜି ଚାଲିଛି। କାହ୍ନୁ ଜାତିରେ ମିଶିବାର ସ୍ଥିର ହେଲା। ସେ ତିନିଦିନ ଉପାସ କରିବ, ମସ୍ତକ ମୁଣ୍ଡାଇବ, ପଞ୍ଚଗବ୍ୟ ପାନ କରିବ, ଗୋଦାନ କରିବ, ଦୀର୍ଘକାଳ ଅସ୍ପୃଶ୍ୟା ସହବାସରେ ଥିଲେ ମଧ୍ୟ ଆଉ ଗୋଟାଏ ଗୋଦାନରେ ମୁକ୍ତି ଲାଭ କରିବ। ତୀର୍ଥ ଯାତ୍ରା ନିଷ୍ପ୍ରୟୋଜନ, ଇତ୍ୟାଦି ଇତ୍ୟାଦି।

ପୁଣି ଜାତି ଭୋଜି ଗୋଟାଏ ଭଲ ଭାବରେ ଦେବ। ଗୌରୀକୁ ଏକା ବେଳକେ ତ୍ୟାଗ କରିବ।

ଏ କାନରୁ ସେ କାନ। ଗୌରୀର ଭାଇ ନନ୍ଦ ଏହା ଶୁଣି ପାରିଲା, ତାର ମା ଓ ଗୌରୀକୁ କହିଲା। ଗୌରୀ ନନ୍ଦ ଓ ତାର ମା ଗଉଡ଼ ସଭାକୁ ଯାଇ ତାଙ୍କର ଅଭିଯୋଗ ଜଣାଇବାର ବିଚାର କଲେ। ଗୌରୀର ମା କହିଲା ଗୌରୀ ତୁ ନ ବୁଝି ଅନ୍ୟ ଜାତିରେ ପଶିଲୁ ଏବେ ଗଉଡ଼ରେ ନଗଲୁ କି ପାଉଡ଼ିରେ ନଗଲୁ - ତୋର କି ଗତି ହେବ। ବୁଢ଼ି ଦିନକୁ ମୋର ଏଇଆ ହେଲା। ଗୌରୀ କହିଲା କାହ୍ନୁ ଏପରି କରିବ ବୋଲି ମୋର ବିଶ୍ୱାସ ନଥିଲା। ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି। ପୁରୁଷ ଜାତି ଏଡ଼େ ଅବିଶ୍ୱାସୀ ନିଷ୍ଠୁର କପଟୀ ଏହା ମୁଁ କିପରି ଜାଣିବି? ସେ ଶପଥ କଲା। ଏତେବେଳେ ଭସାଇ ଦେବାକୁ ବସିଛି। ଯାହା ହେବାର ହେଉ ଦୁଃଖ ଧନ୍ଦା କରି ଖାଇବି, ତାରି ନାମରେ ମୋର କାଚ ମୁଠାକ ଥାଉ। ଅନେକ କାନ୍ଦିଲା।

ରାତି ପାହିଲା ତିନିଜଣ ବାହାରିଲେ। ନନ୍ଦ ଭୂୟାଁ-ତାହା ହାତରେ ସବୁବେଳେ ଧନୁ ଶର। ଆଜି ମଧ ଧନୁଶର ଧରି ମା ଓ ଭଉଣୀ ଆଗରେ ଚାଲିଲା। ଗଉଡ଼ ସଭାରେ ପହଞ୍ଚିଲେ। ଜଣକେତେ ଗୌରୀକୁ ଦେଖି ଅଯଥା ତିରସ୍କାର କରିବାକୁ ଲାଗିଲେ, କହିଲେ କାହ୍ନୁ ପିଲାଟି ଭୂଲି ଯାଇଥିଲା। ଭ୍ରମ ବୁଝିପାରି ନିଜ ଜାତିରେ ମିଶୁଛି, ତୁ ଏଠାକୁ ପୁଣି କାହିଁକି ଆସିଲୁ? ଗୌରୀ କହିଲା କାହ୍ନୁ ମୋଠାରୁ ଭାତ ଖାଇ ସହବାସ କରି ଦୁଇବର୍ଷ କାଳ କଟାଇଲା। ଯେବେ ସେ ଗଉଡ଼ ଜାତିରେ ମିଶିବ, ମୁଁ କାହିଁକି ମିଶିବି ନାହିଁ? କାହ୍ନୁର ଗତିରେ ମୋର ଗତି। ମୁଁ ଗଉଡ଼ଙ୍କ ଭାତ ରାନ୍ଧିବାକୁ ଆସିଛି, ରନ୍ଧାଘରେ ପଶି ଭାତ ରାନ୍ଧିବି। ବାକେ ଜଣ କେତେ ଗଉଡ଼ଙ୍କ କଥାକୁ ଭ୍ରୂକ୍ଷେପ ନ କରି ମଝି ଆଡ଼କୁ ଗଲେ ଦେଖିଲେ- କାହ୍ନୁର କେଶ ମୁଣ୍ଡନ ହୋଇ ଯାଇଛି। ଗାଧୋଇଲେ ପଞ୍ଚଗବ୍ୟ ପାନ କରିବି। ପୁରୋହିତକୁ ଦେଖି ଗୌରୀ କହିଲା ଯେବେ କାହ୍ନୁକୁ ପୁଣି ଗଉଡ଼ କରିଦେବାକୁ ତୁମ୍ଭର ମନ୍ତ୍ର ବଳ ଅଛି, ତେବେ ମୋତେ ମିଶାଇବାକୁ ତୁମ୍ଭର ମନ୍ତ୍ରବଳ ନାହିଁ। ନହିଲେ ପାରଡ଼ିଆ ଜାତିରେ ମିଶାଇ ଦିଅ। ଯେବେ କାହ୍ନୁ ଠାରୁ ପାଣି ପିଇବ ତେବେ ମୋଠାରୁ ପିଅ। ଏ ଭଙ୍ଗିରେ ପୁରୋହିତକୁ ମହା ଧନ୍ଦା ଲାଗିଲା। ଗଉଡ଼ମାନେ ଭାବିଲେ -ଯେବେ ପ୍ରକୃତରେ ରନ୍ଧା ଘରେ ପ୍ରବେଶ କରେ, ତେବେ ସବୁ ନଷ୍ଟ ହେବ। ସମସ୍ତେ ତର୍ଜନ ଗର୍ଜନ କରିବାକୁ ଲାଗିଲେ। ଗୌରୀର ଏଥିରେ ଭୟ ନାହିଁ ସେ ନ୍ୟାୟ ପ୍ରାର୍ଥିନୀ। ପୁରୋହିତ

ଶାସ୍ତ୍ରର ଦ୍ୱାହି ଦେଇ ବୁଝାଇ ବସିଲେ। କାହ୍ନୁ ମୁଣ୍ଡ ପୋତି ବସିଥାଏ। ଗୌରୀ କାନ୍ଦି କାନ୍ଦି ଗୌରୀର ଶପଥ ଓ ପ୍ରତିଜ୍ଞା କଥା କହିଲା। ଗୌରୀର ଭାଇ ଚୂନି ହୋଇ ସମସ୍ତ କଥା ଶୁଣିଲା। ଭୂୟାଁ- ସେ ଶାସ୍ତ୍ର ଓ ଜାତି କଥା ବୁଝେ ନାହିଁ। ବୁଝିବାର ଦରକାର ନାହିଁ। ସେ ମନେ କରେ ପୁରୁଷର ଯେଉଁ ଜାତି ସ୍ତ୍ରୀର ସେହି ଜାତି। ଗୌରୀ ଗଉଡ଼ ହାତ ଧଇଲା ସେ ଗଉଡୁଣୀ। ଉଭୟେ ସୁଖ ଦୁଃଖରେ ରହନ୍ତୁ। ସେଥିରେ ଅନ୍ୟର ହସ୍ତକ୍ଷେପ କରିବା-ସ୍ତ୍ରୀ ପୁରୁଷଙ୍କ ବିନା କାରଣରେ ଅନ୍ତର କରାଇବାର କି ଦରକାର ? ହିନ୍ଦୁର ଜାତିଗତ ଜଟିଳତା ତା'ର ବୋଧଗମ୍ୟ ନୁହେଁ। ଅବଶେଷରେ ନନ୍ଦ କହିଲା ପୁରୋହିତ ଶୁଣ ଯେବେ କାହ୍ନୁକୁ ଜାତିରେ ମିଶାଉଛୁ ତେବେ ଗୌରୀକୁ ମଧ ମିଶାଇ ଦେ। ଯେବେ ଶାସ୍ତ୍ରର ବଳ ଅଛିତ ଦୁହିଁଙ୍କ ହାତରୁ ପାଣି ଖା। ନହିଲେ ଗୌରୀକୁ ଆମ ଜାତିରେ ମିଶାଇ ଦେ। ଏହା ନ କରି ଯେବେ ଟଙ୍କା ଓ ଗାଈ ଲୋଭରେ କାହ୍ନୁକୁ ଗଉଡ଼ କରୁ ଓ ଗୌରୀକୁ ଅନାସ୍ଥା କରୁ, ତେବେ ନିଷ୍ଚୟ ଜାଣ ଏହି ଧନୁ କାଣ୍ଡରେ ଦିନେ ତୋର ପ୍ରାଣ ଯିବ। କାହ୍ନୁକୁ ଲକ୍ଷ୍ୟ କରି କହିଲା ଭାଇ କାହ୍ନୁ ଦୁଇ ବର୍ଷ ଭୂୟାଁଣୀର ଭାତ ଭଲ ଲାଗିଲା, ଏବେ ପୁଣି ଗଉଡୁଣୀର ଭାତ ଖାଇବାକୁ ମନ ବଳାଉଛୁ। ମୋର ଭଉଣୀ ଦୁଃଖ ପାଇବ ତୁ ସୁଖରେ ରହିବୁ।- ଏହା କେବେ ହେବ ନାହିଁ ଭାଇ ହେବ ନାହିଁ। ଗୌରୀକୁ ଛାଡ଼ିଲେ ଏହି କାଣ୍ଡରେ ତୋର ପ୍ରାଣ ନିଷ୍ଚୟ ନେବ। ନନ୍ଦ ଶୁଣିବାର ପାତ୍ର ନୁହେଁ, କହିଲା ମୁଁ ଏଥିର ଉତ୍ତର ନ ପାଇଲେ ଯିବି ନାହିଁ। ଦିନେ ଜନ୍ମ ଦିନେ ମରଣ। ପୁରୋହିତ ଭାବିଲେ ଏଥିର ବ୍ୟବସ୍ଥା ତାଙ୍କ ଶାସ୍ତ୍ରରେ ନାହିଁ। ଗୋପ୍ରାପ୍ତି ଅପେକ୍ଷା ପ୍ରାଣରକ୍ଷା ଶ୍ରେୟସ୍କର ମଣି ସେ ସ୍ଥାନ ତ୍ୟାଗର ଉଦ୍‌ଯୋଗ କଲେ। କାହ୍ନୁର ଜାତି ଅପେକ୍ଷା ପ୍ରାଣର ମମତା ବେଶୀ। ପ୍ରାଣ ଭୟରେ ତାହାର ପୁଣି ପୂର୍ବ କଥାମାନ ମନେ ପଡ଼ିଲା। ସଭା ତ୍ୟାଗ କରି ଏକାବେଳକେ ସେ ଗୋଠକୁ ପ୍ରସ୍ଥାନ କଲା।



*(ଉତ୍କଳ-ସାହିତ୍ୟ ୩୧ଶ ଭାଗ ଅଷ୍ଟମ ସଂଖ୍ୟା ମାର୍ଗଶୀର ୧୯୨୮ମ:ରେ ପ୍ରକାଶିତ।)*

# ଅତିଥି ସତ୍କାର

ବଡ୍ଡୁ, ବଡ୍ଡୁ, ବଡ୍ଡୁ ଏଡ଼େ ସକାଳୁ ଝାରବାଟେ କେଉଁଠାରୁ ଏକାକୀ ଆସିଲୁ ?

ଆଜି ସକାଳୁ ତିନିଜଣ ମଣିଷତ ଝାରକୁ ଶିକାର କରିବାକୁ ଯାଇଥିଲୁଁ। ଜନ୍ତୁର ଅନ୍ୱେଷଣରେ ମୁଁ ଏ ବାଟେ ଚାଲି ଆସିଲି, ବୋଧ ହୁଏ ସେ ଦୁହେଁ ନୁନୀଖୋଲ ଦେଇ ଘରକୁ ଚାଲିଗଲେ।

ଲୁନ୍ଦା-ବା ବା ତୁ ବଡ଼ ଲୋକ କ'ଣ ମିଲୁ ନାହିଁ, କିନ୍ତୁ ମାଇଲେ କ'ଣ ମାଂସ ବିକି ପେଟ ପୋଷିବୁ ? ଏତେ ସକାଳୁ ଏକାକୀ ମହା ଅରଣ୍ୟରେ ବୁଲୁଛୁ। ଯେବେ ଶିକାରର ସଉକ ହେଲା, ଲୋକ ସଙ୍ଗରେ ଆଣନ୍ତୁ କିମ୍ବା ମୋତେ ଖବର ଦେଲେ ମୁଁ କେତେ ଝାର ଜଙ୍ଗଲ ବୁଲାଇ ଜନ୍ତୁ ଦେଖାଇ ଦିଅନ୍ତି। ନୋହିଲେ ତୋର ଦୁଇ ଜଣ ଭାଇ ଅଛନ୍ତି, ସେମାନଙ୍କୁ ଖବର ଦେଲେ ତୋ ସାଙ୍ଗରେ ଛାଇପରି ବୁଲୁଥାନ୍ତେ। ଏକା ମହା ଅରଣ୍ୟରେ ବୁଲିବା କେବେ ଭଲ ନୁହେଁ।

ଜ୍ୟେଷ୍ଠ ମାସ ସକା, ବେଳ ପ୍ରାୟ ଘଟଣ୍ଟା ବେଳେ ଜଣେ ଯୁବକ ନଳବନ୍ଧ ଗ୍ରାମରେ ଉପସ୍ଥିତ ହେଲେ। ସଙ୍ଗରେ କେହି ନାହିଁ। ସହାୟ ଗୋଟାଏ ମାତ୍ର ବନ୍ଧୁକ। ଲୁନ୍ଦା କୋହ୍ଲ ବୃକ୍ଷ ଛେଦନ କରୁଥିବା ବେଳେ ଯୁବକଙ୍କୁ ଦେଖିଲା ଏବଂ ବାତ୍ସଲ୍ୟପୂର୍ଣ୍ଣ ଉପଦେଶ ଦେଲା।

ନଳବନ୍ଧ ଗୋଟିଏ କ୍ଷୁଦ୍ର ଗ୍ରାମ- କ୍ଷୁଦ୍ର ଉପତ୍ୟକା ମଧ୍ୟବର୍ତ୍ତୀ। ଗ୍ରାମର ଉତ୍ତର ପାର୍ଶ୍ୱରେ ଗୋଟିଏ ଚିରପ୍ରବାହିତା -ସ୍ୱଚ୍ଛତୋୟା ନିର୍ଝରିଣୀ ଗ୍ରାମବାସୀଙ୍କର ଜୀବନତୋଷିଣୀ- ଗ୍ରାମରେ ଦୁଇ ଗୋଟି ଘର। ଦୂରରେ ଦୁଇ ଚାରୋଟି ଧାନ କ୍ଷେତ ଅଛି। ଏଣେ ତେଣେ ଖଣ୍ଡ କେତେ ଗୋଡ଼ା ଜମି ଅଛି। ଜଙ୍ଗଲ ଘର ଯାଏ ମାଡ଼ି ରହିଅଛି। ଲୋକସଂଖ୍ୟା ପ୍ରାୟ ପାଞ୍ଚ ଛଅଜଣ। ସମସ୍ତେ ପାର୍ବତୀୟ ମୁଣ୍ଡା କୋହ୍ଲ। ଚାଷ ତାଙ୍କର ପ୍ରଧାନ ବ୍ୟବସାୟ ନୁହେଁ। ବନଜାତ କନ୍ଦମୂଳ ଫଳ ଓ ପଶୁମାଂସ ଦ୍ୱାରା ଜୀବନଯାତ୍ରା ନିର୍ବାହ କରନ୍ତି। ବର୍ଷକ ମଧ୍ୟରେ ଚାରି ଛଅ ଗୋଟା ଜନ୍ତୁ ମାରିପାରିଲେ ତାହା ବିକ୍ରୟ କରି ଯେଉଁ ପଇସା, ଚାଉଳ ବା ଧାନ ପାଆନ୍ତି, ତଦ୍ୱାରା ସେମାନଙ୍କର ଖାଦ୍ୟ ଓ ପରିଧାନର ସଂସ୍ଥାନ ହୁଏ। ସେହି ଆଦିମ ଅବସ୍ଥା

ତ୍ୟାଗ କରି ନାହାନ୍ତି। ଏମାନେ ବହୁ କାଳରୁ ଏ ଗ୍ରାମରେ ବାସ କରୁ ଅଛନ୍ତି। ସଭ୍ୟତାର ନିୟମ ପ୍ରବଳ ହୋଇ ନଥିବା ଯାଏ ପୂର୍ବ ଧରଣ ରକ୍ଷା କରି 'ମାଟି ଛବି' ରହି ଅଛନ୍ତି।

ଯୁବକ କ୍ଷତ୍ରିୟ- ଲୁନ୍ଦା ମୁଣ୍ଡା କୋହ୍ଲ। ଉଭୟଙ୍କ ମଧ୍ୟରେ ସମ୍ବନ୍ଧ କିନ୍ତୁ ପିତୃବ୍ୟ ଓ ଭ୍ରାତୃପୁତ୍ର। ପିତାର ବଡ଼ ଭାଇଙ୍କୁ ବଡୁ କହନ୍ତି ଏବଂ ବାତ୍ସଲ୍ୟ ଭାବରେ ଭାତୃଷ୍ପୁତ୍ର ମଧ ବଡୁ ବୋଲି ଡାକନ୍ତି। ଆଦିବାସୀମାନେ ଗ୍ରାମବାସୀମାନଙ୍କ ସହିତ ଗୋଟିଏ ସମ୍ପର୍କ ବରାବର ଯୋଖି ରଖନ୍ତି, ଏବଂ ସମ୍ପର୍କ ଅନୁସାରେ ସମ୍ମାନ କରନ୍ତି। ଅରଣ୍ୟବାସୀ ଆର୍ଯ୍ୟ ଅନାର୍ଯ୍ୟମାନଙ୍କର ଏତାଦୃଶ ସମ୍ପର୍କ ଅଯଥା ବୋଲି ମନେ ହେଲେ ମଧ ଏ ସମ୍ବନ୍ଧ ସୌହାର୍ଦ୍ଦ୍ୟ ବୃଦ୍ଧି କରେ ଏବଂ ଏ ହେତୁରୁ ଅନେକ ସମୟରେ ବିବାଦ ବନ୍ଦ ହୋଇଯାଏ। ପୂର୍ବକାଳରେ ଅନ୍ୟମାନେ ସମ୍ବନ୍ଧ ରଖିବା ତେଣେ ଥାଉ, ରାଜାମାନେ ମଧ ପ୍ରଜାଙ୍କ ସଙ୍ଗରେ ଭାଇ ଦାଦା ସମ୍ବନ୍ଧ ରଖିଥିଲେ। କ୍ରମେ କ୍ରମେ ଏ ସମ୍ବନ୍ଧ ଘୃଣ୍ୟ ଓ ନିନ୍ଦ୍ୟ ବୋଲି ବିବେଚିତ ହେଉଅଛି। ସେ ଯାହାହେଉ ଲୁନ୍ଦାର ବୟସ ପ୍ରାୟ ୫୦ବର୍ଷ। ଯୁବକର ପିତା ଅପେକ୍ଷା ବଡ଼। ଯୁବକର ପିତା ଲୁନ୍ଦାକୁ ଦାଦା ବୋଲି ଡାକନ୍ତି। ଏଣୁ ଲୁନ୍ଦା ଯୁବକର ବଡୁ। ଆଧୁନିକ ଯୁବକଙ୍କ ପକ୍ଷରେ ଏହା ଗୋଟିଏ ହାସ୍ୟାସ୍ପଦ ବିଷୟ। ତୁମେ ଆପଣ ଇତ୍ୟାଦି ବିଷୟ ଏମାନଙ୍କ ଅଭିଧାନରେ ନାହିଁ। ତୁ ବୋଲି ରାଜା ପ୍ରଜା ସମସ୍ତଙ୍କୁ କହନ୍ତି। ସରଳତାର ଚରମ। ତେଣୁ ଏତାଦୃଶ ଶବ୍ଦ ସେମାନଙ୍କ ମୁଖରେ ସୁଖଶ୍ରାବ୍ୟ।

ଲୁନ୍ଦା କହିଲା ବଡୁ ମୁହଁ ହାତ ଧୋଇପକା, ମୋ ଘରେ ଯାହା ଅଛି ଖାଇବୁ। ମୁଁ ଯାଉଛି ଆଣିବି।

ଯୁବକ ପର୍ବତ ଚଢ଼ି ଉତ୍ତୁରି ଶ୍ରାନ୍ତ କ୍ଳାନ୍ତ। ସ୍ରୋତ ନିକଟରେ ପଥର ଉପରେ ବସି ଏବଂ ପାଣିରେ ଗୋଡ଼ ଯୋଡ଼ିକ ରଖି ଅନ୍ୟମନସ୍କ ଭାବରେ ଏଣେତେଣେ ପାଣି ଫିଙ୍ଗୁ ଅଛନ୍ତି ଓ ଜଳର ପ୍ରବାହକୁ ଏକ ଦୃଷ୍ଟିରେ ଚାହିଁ ଅଛନ୍ତି। କିଛି ସମୟ ଚାଲିଗଲା।

"ଦାଦା ଦାଦା" ଶବ୍ଦ ଶୁଣି ଯୁବକ ଚମକି ପଡ଼ି ପଛକୁ ଅନାଇଲେ। କିଲିଙ୍ଗି କଣ ଧରି ତାଙ୍କ ଆଡ଼କୁ ଆସୁଅଛି। ଯୁବକଙ୍କ ନିମନ୍ତେ ଆଣିଥିବା ଖାଦ୍ୟ ସାମଗ୍ରୀ ରଖି ଦେଇ ଯୁବକକୁ ଜୁହାର କଲା। କହିଲା ଦାଦା ପାଣି ଖେଳୁଛୁ, ଭୋକ ଲାଗୁଥିବ ଉଠ ଖା।

ଯୁବକ - କ'ଣ ଆଣିଛୁ ଜିଲିଙ୍ଗି

ଜିଲିଙ୍ଗ- ଘରେ ଯାହା ଥିଲା । କୋହ୍ଲ ଘରେ ଚୁଡ଼ା ଅଛି କି ଗୁଡ଼ ଅଛି ? ଆମ୍ବ ଆଣିଛି । ଶୁଖା କେନ୍ଦୁ ଆଣିଛି । ବିଛଣା ମହୁ ଖଣ୍ଡେ ଆଣିଛି । ଆଉ ଘର ମଞ୍ଜି ଦୁଇଟା ଆଣିଛି ।

ଯୁବକ - ମୋ ଘରେ ଏଠୁ ବଳି କଣ ମିଳନ୍ତା ଜିଲିଙ୍ଗି ?

ଜିଲିଙ୍ଗି - ମୁଁ ସିନା ଝରଣ ଆମ୍ବ ଆଣିଛି, ତୋ ଘରେ ବଡ଼ ବଡ଼ ତୋଟା ଆମ୍ବ ଥିବ । ଖରା ମିଠାଇ ଥିବ ।

ଯୁବକ - ଆମ୍ବ ସୁଆଦ କି ଆମ୍ବିଳା ?

ଜିଲିଙ୍ଗି - ଖାଇଲେ ସିନା ଜାଣିବୁ । ଆଗତ ଖା ।

ଯୁବକ ଜଳଯୋଗର ଆୟୋଜନରେ ବସିଲା ।

ଯୁବକ - ଜିଲିଙ୍ଗି, ପ୍ରଥମରୁ ମହୁ ଖଣ୍ଡ ଖାଏଁ । ମହୁତ ସବୁ ଦିନେ ମିଳେ ନାହିଁ ।

ଜିଲିଙ୍ଗି - ନା ଦାଦା ଆଗ ମହୁ ଖାଇଲେ ତୋର ପାଟି ମିଠା ହୋଇଯିବ । ଆମ୍ବତକ ଆମ୍ବିଳା ଲାଗିବ । ପଛେ କହିବୁ ମୋର ଭଉଣୀ ଆମ୍ବିଳା ଆମ୍ବ ଖୁଆଇଲା । ଆଗରେ ଆମ୍ବ ଖା, ତହୁଁ ଖାଇବୁ କେନ୍ଦୁ ପଛେ ଖାଇବୁ ମହୁ ।

ଯୁବକ - ଆଣ ଦେ । ତୁ କଣ ଜାଣୁ କେଉଁ ଆମ୍ବଟି ମିଠା କେଉଁ ଆମ୍ବଟି ଖଟା ?

ଜିଲିଙ୍ଗି - ହଁ ।

ଯୁବକ ଅତି ଆନନ୍ଦରେ ଆମ୍ବ ଖାଇବାକୁ ଆରମ୍ଭ କଲେ । ଆମ୍ବ ଖାଇଲାବେଳେ ରାମ ଓ ଶବରୀର ଉପାଖ୍ୟାନ ସ୍ମରଣ ହେଲା । ଶବରୀ ରାମଙ୍କ ନିମନ୍ତେ ଚାଖି ଚାଖି ଭଲ ଆମ୍ବ ସଂଗ୍ରହ କରି ରଖିଥିଲା । ସତେ କ'ଣ ପ୍ରତ୍ୟେକ ଆମ୍ବ ଆସ୍ୱାଦନ କରି ରାମଙ୍କ ନିମନ୍ତେ ଉଚ୍ଛିଷ୍ଟ କରି ରଖିଥିଲା ? ତାହା ନୁହେଁ । ପ୍ରତି ଗଛର ଆମ୍ବ ଗୋଟିଏ ଆସ୍ୱାଦନ କରେ, ଯେଉଁ ଗଛର ଆମ୍ବଟି ମିଠା, ସେହି ଗଛର ଆମ୍ବ ଆଣି ରଖିଥାଏ । ଗୋଟିଏ ଗଛର ପ୍ରତ୍ୟେକ ଆମ୍ବର ସ୍ୱାଦ ଭିନ୍ନ ଏପରି ତ ନୁହେଁ । ଜିଲିଙ୍ଗି ମଧ୍ୟ ସେହିପରି କେଉଁଗଛର ଆମ୍ବ ମିଠା କେଉଁ ଗଛର ଆମ୍ବ ଖଟା ତାହା

ଜାଣେ। ଏମନ୍ତ କି ନଳବନ୍ଧ ଝରଣର ପ୍ରତ୍ୟେକ ଗଛର ଫଳ ଆସ୍ୱାଦନ କରି ଚିହ୍ନି ରଖିଛି ବୋଲି ସେ ପ୍ରକାଶ କଲା।

ତୋଟା ଆମ୍ବ ଓ ଝରଣ ଆମ୍ବ ମଧ୍ୟରେ ପାର୍ଥକ୍ୟ ଅତ୍ୟଧିକ। ଆମ୍ବ ଭାରତବର୍ଷର ନିଜସ୍ୱ। ଏ ବୃକ୍ଷ ପୃଥିବୀର ଅନ୍ୟତ୍ର ନଥିଲା। ଏବେ ସର୍ବତ୍ର ବିସ୍ତୃତି ଲାଭ କରି ଅଛି। ଭିନ୍ନ ଭିନ୍ନ ସ୍ଥାନରେ ଜନ୍ମିବାରୁ ଭିନ୍ନ ଭିନ୍ନ ଆସ୍ୱାଦ ହୋଇଅଛି। ଆକାର ମଧ୍ୟ ଛୋଟ ବଡ଼ ହୋଇଅଛି। ପାର୍ବତ୍ୟ ଝରଣରେ ଯେଉଁ ଆମ୍ବ ଜନ୍ମେ ତାକୁ ଝରଣ ଆମ୍ବ କହନ୍ତି। ଏହା ଆମ୍ବର ସ୍ୱାଭାବିକ ଅବସ୍ଥା, ତଥାପି ଝରଣ ବିଶେଷରେ ସ୍ୱାଦ ଓ ଆକାରର ଇତର ବିଶେଷ ଦେଖାଯାଏ। ତୋଟା ଆମ୍ବ ବଡ଼ ଓ ସୁସ୍ୱାଦୁ, କିନ୍ତୁ ଆମ୍ବର ଯେ, ସ୍ୱାଭାବିକ ସୁବାସନା, ସେ କେବଳ ଝରଣ ଆମ୍ବରେ ଅଛି ବୋଲି ଅନେକଙ୍କର ମତ।

ଯୁବକ ଭୋଜନ କରିସାରି ନବୀନ ଶାଳ ପଲ୍ଲବଦ୍ୱାରା ନିର୍ଝରଣୀର ନିର୍ମଳ ଜଳ ପାନ କରି ତୃପ୍ତି ଲାଭ କଲେ। ନବ ପଲ୍ଲବରେ ଜଳ ପାନ କରିବାରେ ଯେଉଁ ଆନନ୍ଦ ମିଳେ, ତାହା ଅରଣ୍ୟବାସୀ କେବଳ ଜାଣନ୍ତି। ସମୟ ସମୟରେ କାଚ ଓ ଧାତବ ପାତ୍ରରେ ପିଇବା ଅପେକ୍ଷା ନବ ପଲ୍ଲବରେ ପାଣି ପିଇବା ଓ ନବ ପଲ୍ଲବ ନିର୍ମିତ ଦନାରେ ପଖାଳ ଖାଇବାକୁ ଆଗ୍ରହ ବଳେ।

ଯୁବକ ହାତଧୋଇ ପଥର ଉପରେ ବସିଲେ। ଜିଲିଙ୍ଗି ନିକଟକୁ ଆସି ଛିଡ଼ା ହେଲା। କହିଲି "ଦାଦା" ତୁ ଟିକିଏ ବସିଥା ମୁଁ ଯାଇ ଘରୁ ଚାଉଳ ହେରିକା ଯୋଗାଡ଼ କରି ଆଣେ, ତୁ ରାନ୍ଧିବୁ। ଯୁବକଙ୍କୁ ଉତ୍ତର ଦେବାକୁ ଅବସର ନଦେଇ ନିମିଷେ ମଧ୍ୟରେ ଯୁବକଙ୍କ ନେତ୍ରରୁ ଅନ୍ତର ହୋଇ ଗଲା। ଯୁବକ ଏକ ଦୃଷ୍ଟିରେ ଅନାଇ ରହିଲେ ତାର ଯିବା ବାଟ ଆଡ଼େ।

ଜିଲିଙ୍ଗି ଲୁନ୍ଦା କୋହ୍ଲର କନିଷ୍ଠ କନ୍ୟା, ଅବିବାହିତା, ବୟସ ପ୍ରାୟ ଷୋହଳ- ଯୁବକ ଅପେକ୍ଷା ଚାରି ବର୍ଷ ସାନ। ଜିଲିଙ୍ଗି ଯୁବତୀ ରୂପବତୀ କି ନା, ତାହା କିଏ ଠିକ୍ କରି କହି ପାରିବ ? ସୌନ୍ଦର୍ଯ୍ୟରେ ନିକଷ ରୁଚି। ଜଣକୁ ଯାହା ସୁନ୍ଦର ଅନ୍ୟକୁ ତାହା ଅସୁନ୍ଦର। ତେବେ ଦୁଗ୍ଧଫେନନିଭବର୍ଣ୍ଣା ନୁହେଁ। ସଂସାରରେ କିଏ ଦୁଧ ପରି ସାଦା ? ଭାରତ ବର୍ଷୀୟା ତେଣେ ଥାଉନ୍ତୁ, ଇଉରୋପୀୟ ଶ୍ୱେତାଙ୍ଗ ରମଣୀମାନେ ମଧ୍ୟ ନୁହନ୍ତି। ତେବେ ସେମାନଙ୍କୁ ଏ ଉପମା ଦିଆଯାଇପାରେ। ଜିଲିଙ୍ଗି କାନକୀଲତା ନୁହେ ବା କେତକୀ ସ୍ୱର୍ଣ୍ଣବର୍ଣ୍ଣା ନୁହେଁ। ଚୀନା ଓ ଜାପାନ ବାସୀମାନଙ୍କୁ ପୀତ ବର୍ଣ୍ଣ

ଜାତି ବୋଲନ୍ତି। ମାତ୍ର ଚୀନ ରମଣୀମାନେ କଣ ସ୍ୱର୍ଣ୍ଣ ବର୍ଣ୍ଣ ? କେବଳ ଶୁଭ୍ରବର୍ଣ୍ଣ। ରମଣୀମାନେ ହଳଦୀ ଜର୍ଜରିତା ହେଲେ କେତକୀର ଆଭାକୁ ପାନ୍ତି। ଜିଲିଙ୍ଗି ଶୁଭ୍ରା ନୁହେଁ; ଏବଂ ଜନ୍ମାବଧି କେବେ ହଳଦୀ ଲେପନ କରି ନାହିଁ। ତାହାର ବର୍ଣ୍ଣ ଶ୍ୟାମ। ଶିରୀଷ ମୃଦୁଳା ଲବଣୀ ପିତୁଳା ନୁହେଁ। ତେବେ ସୌନ୍ଦର୍ଯ୍ୟ ଆଉ କେଉଁ ଠାରେ ? ଜିଲିଙ୍ଗି ଦୁଇ ଘରି ଘଣ୍ଟା ଛାୟାତଳେ ନିଶ୍ଚିନ୍ତ ଭାବରେ ବସିଥିଲେ ଯାହା, ଦୁଇ ଘରି ଘଣ୍ଟା ଖରାରେ ପର୍ବତ ପାହାଡ଼ ବୁଲି ଆସିଲେ ତାହା। ମଙ୍ଗ ଭଙ୍ଗ ମଧରେ ସିନ୍ଦୁର ଶିରୀ ଚଢ଼ାଇ ନାହିଁ। ଜୀବନ ମଧରେ ଥରେ କେବଳ ତାର ସ୍ୱାମୀ ବିବାହ ବେଳେ ସୀମନ୍ତରେ ସିନ୍ଦୁର ଶିରୀ ଚଢ଼ାଇବ। ତୈଳାଭାବରୁ ରୁକ୍ଷକେଶା। କଜ୍ଜଳ ଲାଞ୍ଛା ଦ୍ୱାରା ମନସିଜଂ ବିଶିଖ ବନାଇ ନାହିଁ। କଜ୍ଜଳ ଯେ କି ପଦାର୍ଥ ତାକୁ ଜଣା ନାହିଁ। କାମ କୋଦଣ୍ଡ ବୋଲ, ଯାହା ବୋଲ ତାର ସୁଭ୍ରୂଯୁଗଳ ବିଦ୍ୟମାନ। ଯେହେତୁ ଏହା ସ୍ୱାଭାବିକ। ନାକଟି ତିଳଫୁଲ ପରି କି ଶୁକଚଞ୍ଚୁ ପରି କହିବା କଠିନ, ତେବେ ଦେଖିବାକୁ ସୁନ୍ଦର। ପଦ୍ମପଲାଶ ଲୋଚନା ଏଥିରେ ସନ୍ଦେହ ନାହିଁ ଏମାନଙ୍କର ଆଖି ଟିକିଏ ରକ୍ତାଭ ହୁଏ। ଆୟତ ଲୋଚନା ମଧ। ଓଷ୍ଠାଧର ମନ୍ଦ ନୁହେଁ, ତେବେ ପକ୍ୱ ବିମ୍ବାଧରୋଷ୍ଠୀ ନୁହେ - ସେ ତ ଜନ୍ମକେ କେବେ ହେଲେ ପାନ ଖାଇ ନାହିଁ। ଅଳଙ୍କାର ତଥୈବଚ। ବେଶ ଭୂଷା କ'ଣ ? କେଶରେ ସୁପଲ୍ଲବ କୁଟଜ ପୁଷ୍ପ ଓ ନିଆଳି ପୁଷ୍ପ। କାନରେ ଛୋଟ ଛୋଟ ତିଳେଇ ଫୁଲ ଦୁଇଖଣ୍ଡ। ଆଠହାତୀ ମୋଟ ଦେଶୀ ଲୁଗାଖଣ୍ଡେ ତାର ଶରୀର ଆବୃତ କରୁଥିଲା। ଆକାର ତୁଳନାରେ ଅଙ୍ଗପ୍ରତ୍ୟଙ୍ଗ ଯଥାନ୍ୟସ୍ତ ଯୋଗ୍ୟ ନିର୍ମିତ ଓ ସୁଶ୍ରୀ ସମ୍ପନ୍ନ। ବଣା ଏଣୀ ନୟନା ସତ ମାତ୍ର ତାହା ପୁରୁଷମନ ଆକର୍ଷଣ କରିବାକୁ ଶିକ୍ଷା କରିନାହିଁ। ତାହାର ଚାହାଣି ସେହିପରି। ଲବଣୀପିତୁଳା ନାଗରର ଚାଟୁ ଉକ୍ତି ଶୁଣି ଜଡସ୍ଥବ ହୋଇ ଆତ୍ମରକ୍ଷା ନିମନ୍ତେ କାନ୍ଥ ବା ବୃକ୍ଷରେ ଲାଗି ଯିବେ ଏବଂ ଲଜ୍ଜାରେ ବଦନକମଳ ଘୋଡ଼ାଇ କିଂକର୍ତ୍ତବ୍ୟବିମୂଢ଼ ହେବେ। ଜିଲିଙ୍ଗି ଏପରି ନାଗରକୁ ଗଳହସ୍ତ କରି ଦଶହସ୍ତ ଦୂରରେ ନିକ୍ଷେପ କରି ଦେବାର ଶକ୍ତି ସଞ୍ଚୟ କରିଅଛି। ବର୍ଣ୍ଣ ହିଁ ଯେବେ ସୌନ୍ଦର୍ଯ୍ୟର ପରିଚାୟକ, ତେବେ ଜିଲିଙ୍ଗି ନିତାନ୍ତ ଅସୁନ୍ଦରୀ, ଅଙ୍ଗସୌଷ୍ଠବରେ ଯେବେ ସୌନ୍ଦର୍ଯ୍ୟର ଆଭାସ ମିଳେ ତେବେ ଜିଲିଙ୍ଗିକୁ ଅସୁନ୍ଦରୀ ବୋଲିବାର କୌଣସି କାରଣ ନାହିଁ।

ଲୁନ୍ଦା ଓ ଜିଲିଙ୍ଗି ରନ୍ଧନ ସମାଗ୍ରୀ ଧରି ଆସିଲେ। ଲୁନ୍ଦା କହିଲା ବଡୁ ଆମ୍ଭର ଗ୍ରାମରେ କେହି ନାହାନ୍ତି, ସମସ୍ତେ ସମ୍ବରର ମାଂସ ବିକ୍ରି କରିବାକୁ ଗ୍ରାମମାନଙ୍କୁ

ଯାଇଅଛନ୍ତି। କାଲି ଡେବରା ଗୋଟିଏ ସମ୍ବର ମାରିଥିଲା। ମୁଁ ମୁଷାଗୁଡ଼ି ଗ୍ରାମକୁ ଦଉଡ଼ି ଯାଇ ସେଠାରୁ ଗୋଟିଏ ଲୋକ ତୋର ଘରକୁ ପଠାଇ ଦେଲି। ତୁ ସନ୍ଧ୍ୟାରେ ଘରକୁ ଫେରିବୁ ବୋଲି ଖବର ଦେଇ ଆସିବ। ଘରେ ଖବର ନଦେଲେ ସମସ୍ତେ ଖୋଜନ୍ତେ ଯେ। ଗାଧୋଇ ପଡ଼ ଭାତ ରାନ୍ଧ ଖାଇସାରି ନିଶ୍ଚିନ୍ତରେ ଶୋଇବୁ। ଘରକୁ ଯିବୁ। ଇତି ମଧ୍ୟରେ ଜିଲିଙ୍ଗି କାଠ ଯୋଗାଡ଼ କରିବାରେ ବ୍ୟସ୍ତ। ଯୁବକ ତାର ସାହାଯ୍ୟ କରିବାକୁ ଗଲେ। ଲୁନ୍ଦା ପାଣି କାନ୍ଥ ଛାୟାରେ ଚୂଲୀ ବନାଇବାକୁ ଲାଗିଲା। ରନ୍ଧନ ସାମଗ୍ରୀ ଗୋଟିଏ ଆଟିକା, ମୋଟ ଚାଉଳ ପ୍ରାୟ ଗଁଠସେରେ, ଲୁଣ, ସମ୍ବର ମାଂସ କିଛି। ଜିଲିଙ୍ଗି କହିଲା ଦାଦା ମୋଟ ଚାଉଳ କିପରି ଖାଇବୁ।

ଯୁବକ - ମୋଟା ଭାତ ଯେବେ ଗଳାରେ ନଯାଏ, ତେବେ ମାଂସ ଖଣ୍ଡମାନ କିପରି ଯାଏ ମୁଢ଼ି କିପରି ଯାଏ ? ନଡ଼ିଆତ ଦେଖିଛ ଜିଲିଙ୍ଗି ତାଠାରୁ କଣ ଆଣ୍ଟ ମୋଟା ଭାତ ? ଯେବେ ନଗଳେ ତେବେ ବଡ଼ ଲୋକମାନେ ନଡ଼ିଆ ଖାନ୍ତି କିପରି ? ଭୋକ କଲେ ସବୁ ରୁଚେ। ଦେଖିବୁ ମୁଁ ଆଜି କେତେ ଭାତ ଖାଇବି। ବନ୍ଧୁ ତୁ ଓ ଜିଲିଙ୍ଗି ଆଜି ଏଠାରେ ଖାଇବ।

ଲୁନ୍ଦା - ନା ବନ୍ଧୁ, ତତେ ଏଡ଼େ କଷ୍ଟ ଦେବାର ଦରକାର ନାହିଁ। ତୁ ଖାଇବୁ, ଭାତ ବଳିଲେ ଜିଲିଙ୍ଗି ଖାଇବ, ମୋର ଘରେ ବାସୀଭାତ ଅଛି, ମୁଁ ତାହା ଖାଇବି, ନୋହିଲେ ସେଗୁଡ଼ିକ ନଷ୍ଟ ହେବ।

ଯୁବକ ରନ୍ଧନ ପଟୁ, ମାତ୍ର ଆଜି ବାସନ ବର୍ତ୍ତନ ନାହିଁ; ଚଟୁ ନାହିଁ ଜଳ ନିକଟରେ ରନ୍ଧନର ଯୋଗାଡ଼ ହେଲା ଚଟୁ ନ ଥିବାରୁ ଆଟିକାକୁ ପଥର ଦ୍ୱାରା ଫୋଡ଼କରି ଫେନ ନିଷ୍କାସିତ କରିବାର ବ୍ୟବସ୍ଥା ହେଲା। ଯୁବକ ପୂର୍ବେ ଏପରି ରନ୍ଧନ କରିଥିଲେ ମସଲା, ନାହିଁ, ଘିଅ ନାହିଁ, ଲୁନ୍ଦାର ପରାମର୍ଶ ଅନୁସାରେ ଗୋଟିଏ ବାଉଁଶ ନଳରେ ମାଂସଗୁଡ଼ିକ ଭର୍ତ୍ତିକରିଦେଲେ, ସେ ନଳ ଉପରେ ମାଟି ଲେପନ କରିଦେଇ ମୁଖ ବନ୍ଦ କଲେ ଏବଂ ସେହି ନଳକୁ ଜ୍ୱଳନ୍ତ ଅଙ୍ଗାରରେ ରଖିଦେଲେ। ଜିଲିଙ୍ଗି ଯେ ତୂନି ହୋଇ ବସିଥିଲା ତାହା ନୁହେ। ଝରଣ ଚିଙ୍ଗୁଡ଼ି ଓ କଙ୍କଡ଼ା କିଛି ଧରି ଆଣି ନିକଟରେ ରଖିଦେଲା। ଯୁବକ କହିଲା - ଏହାକୁ କାହିଁରେ କିପରି ରାନ୍ଧିବି ?

ଜିଲିଙ୍ଗି - ମୁଁ ତତେ ଶିଖାଇବି।

ଯୁବକ - ତୁ ଯେପରି ବତାଇବୁ, ମୁଁ ସେପରି ରାନ୍ଧିବି, କହ।

ଜିଲିଙ୍ଗି - କଞ୍ଚା ଆମ୍ବ ଫଡ଼ା କେତେ ମିଶାଇ ଦେ, ଲୁଣ ଟିକିଏ ଦେ, ପରେ ଚଉତିରେ ଦେଇ ପୋଡ଼ି ଦେ।

ଯୁବକ ତାହାହିଁ କଲେ। ଭାତ ମାଛ ମାଂସ ତୟାର ହେଲା। ପକ୍ୱ ଆମ୍ବତ ଯଥେଷ୍ଟ। ଜିଲିଙ୍ଗି ଯୁବକଙ୍କ ଶୟନ ନିମନ୍ତେ ଜାମୁ ମୂଳର ନିବିଡ଼ ଛାୟାରେ ଶଯ୍ୟା ରଚନା କରି ଦେଇଥିଲା। ତଳରେ କେତେଗୁଡ଼ିଏ ଜାମୁଡାଳ, ତା ଉପରେ କଅଁଳ ଶିୟାରିପତ୍ର ଦ୍ୱାରା ନିର୍ମିତ ତିନିହାତ ଲମ୍ବ ଓ ପ୍ରାୟ ଦେଢ଼ହାତ ଓସାର ଗୋଟିଏ ପଲଙ୍ଗ ଅତି ପରିପାଟି ସହିତ ନିର୍ମାଣ କରି ବିଛାଇ ଦେଇଥିଲା। ଜିଲିଙ୍ଗି କହିଲା ଦାଦା ତୁ ନିଶ୍ଚିନ୍ତରେ ଯା ଶୋଇବୁ। ମୁଁ ତଳ ଡୁଭାରେ ଭାତ ଖାଇବି। ଯୁବକ ଶୟନ କଲେ ଶୀତଳ ପବନ ତାଙ୍କର ନିଦ୍ରାରେ ସହାୟତା କଲା। ଯୁବକ ନିଦ୍ରାଭିଭୂତ ହୋଇ ପଡ଼ିଲେ।

ବହୁକ୍ଷଣ ପରେ ନିଦ୍ରା ଭଙ୍ଗ ହେଲା, ଦେଖନ୍ତି - ନିକଟରେ ଲୁନ୍ଦା ନିବିଷ୍ଟଚିତ୍ତରେ ଗାଲରେ ହାତଦେଇ ବସିଅଛି।

ଯୁବକ - ବନ୍ଧୁ ତୁ ଏଠାରେ ବସିଛୁ ଆଉ ମୁଁ ନିଶ୍ଚିନ୍ତରେ ଶୋଇଛି।

ଲୁନ୍ଦା - ତୋତେ ଜଙ୍ଗଲରେ ଛାଡ଼ି ଆମେ ଘରେ ଥାନ୍ତୁ, ଏହା ଗୋଟିଏ କଥା। ଜିଲିଙ୍ଗି ତୋତେ ଜଗି ବସିଥିଲା। ମୁଁ ଆସିବାରୁ ସେ ଗଲା।

ଯୁବକ - ମୋତେ ଜିଲିଙ୍ଗି ଜଗି ବସିଥିଲା ସେ କଣ କରନ୍ତା କିଛି ବିପଦ ପଡ଼ିଲେ ?

ଲୁନ୍ଦା - ଜଣେ ଥିଲେ କିଛି ହେଲେ ତ ସାହାଯ୍ୟ ମିଳନ୍ତା। ନୋହିଲେ ତୋ ଲାଗି ପଛେ ପ୍ରାଣ ଦିଅନ୍ତା, ତତେ ତ ରକ୍ଷା କରନ୍ତା। ସେ ବସି କରି ଦେଖିଥିଲା ବେଳେ ବିପତ୍ତିର କି ଆଶଂକା ?

ଯୁବକ ଭାବିଲେ କୋହ୍ଲ ଯୁବତୀ ପକ୍ଷରେ ପ୍ରାଣ ଦେଇ ଅନ୍ୟକୁ ରକ୍ଷା କରିବା ଅସମ୍ଭବ ନୁହେଁ।

ଯୁବକ ଲୁନ୍ଦା ସହିତ ଅନେକ କଥାବାର୍ତ୍ତା ଆରମ୍ଭ କଲେ। ପ୍ରଥମେ ଶିକାର କଥା ଦେବତା ଭୂତ ପିଶାଚ ଇତ୍ୟାଦି କଥା, ଯାହା ତାଙ୍କ ମନକୁ ଆସିଲା ପଚାରିଲେ।

ଯୁବକ - ତୁମର ବଡ଼ ଦେବତା କିଏ ?

ଲୁନ୍ଦା - ସିଂ କୁଙ୍ଗା ।

ଯୁବକ - କେଉଁଠି ଥାଏ ?

ଲୁନ୍ଦା - ସବୁଠି ଅଛି ସବୁ ଦେଖୁଛି ।

ଯୁବକ - ଆଉ କି କି ଦେବତା ଅଛନ୍ତି ?

ଲୁନ୍ଦା - ଆମର ଦେବତାର କଥା କଣ ପଚାରୁଛୁ ବଡୁ । କେହ୍ଲ ଜାତିରେ ଗଛ ଗୋଟାକୁ ଦେବତା ଟାଏ, ପଥର ଗୋଟାକୁ ଦେବତାଟାଏ କେତେ ନାମ କହିବି, କିଏ ଏତେ ନାମ ଦେଇଛି ।

ଯୁବକ - ତୋର ବାପ ମଲା ଯେ, କେଉଁ ଆଡ଼େ ଗଲା ?

ଲୁନ୍ଦା - ମଲା ସିନା ଅଛି ତ ପ୍ରେତ ହୋଇ ଅଛି ।

ଯୁବକ - ପ୍ରେତ କିପରି ?

ଲୁନ୍ଦା - କେଜାଣି ।

ଯୁବକ - ଅଛି ବୋଲି କିପରି ଜାଣିଲୁ ?

ଲୁନ୍ଦା - ପୂର୍ବରୁ ତ ବୁଢ଼ା ବୁଢ଼ାମାନେ କହି ଆସୁଛନ୍ତି ଯେ, ମଲେ ମଧ ଜୀବନଟା ପ୍ରେତ ହୋଇଥାଏ । ତାର ବଂଶର ଲୋକମାନଙ୍କର ଭଲମନ୍ଦ ଦେଖୁଥାଏ ।

ଯୁବକ - ବଡୁ ତୋର ବାପ ମାକୁ କେବେ ଦେଖିଛୁ ?

ଲୁନ୍ଦା - ନାହିଁ ଛାଇଟାକୁ କିପରି ଦେଖିବି ?

ଯୁବକ - ତୋର ନିଜର ଛାଇଟା ତତେ ଦିଶେତ ? ମୋର ଛାଇଟା ତୋତେ ଦେଖୁଛି ତ ?

ଲୁନ୍ଦା - ଛାଇର ଛାଇ କିପରି ଦିଶିବ, ଦିଶେ ନାହିଁ । ଅଛି ଅଛି ବୋଲି ଲୋକେ କହନ୍ତି ।

ଯୁବକ - ଭଲ ମନ୍ଦ ଦେଖେ ବୋଲୁଛୁ ଯେ ?

ଲୁନ୍ଦା - ଲୋକ ଭଲ କରୁଥିଲେ ଆନନ୍ଦରେ ଥାଏ । ଅସାର କଥା କଲେ ଲାଗେ । ତୁ ଭଲ କାମ କଲେ ତୋର ମା କିଛି କହେ କି ? ଆଜି ଏଠାରେ ରହିଛୁ ଯେ ତୋତେ ତୋର ମା ଦୁଇପଦ ଗାଳି ଦେବକି ନାହିଁ ?

ଯୁବକ - ହଁ କିଛି କହିବେ ।

ଲୁନ୍ଦା - ହଁ ସେହିପରି ବହୁ ଝିଅ କୌଣସି ଅସାର କାମ କଲେ ପ୍ରେତମାନେ ଲାଗନ୍ତି। ଆମେ ସେମାନଙ୍କୁ ସନ୍ତୋଷ କରିବାକୁ ବଳି ଦେଉଁ ପୂଜା କରୁଁ।

ଯୁବକ - ଛତା ଦେଖିଲେ ଦେବତା ଦିଶେ କି ବତ୍ସୁ ?

ଲୁନ୍ଦା - ମୁଁ ଗୁଣିଆ ନୁହେଁ ବତ୍ସୁ, ଏଣୁ ଦିଶେ କି ନାହିଁ ମୁଁ କହିପାରିବି ନାହିଁ। ଯେ ଯାହା କହିଲା ମୁଁ ବିଶ୍ୱାସ କରେ। ମୁଁ ଜାଣେ ମୋର ଘର କାମ କଥା ଆଉ ଶିକାର କଥା।

ଯୁବକ ଆଉ ଲୁନ୍ଦା ମଧ୍ୟରେ ଏତାଦୃଶ ଅଧ୍ୟାତ୍ମ ଚର୍ଚ୍ଚା ପଡ଼ିଥିଲାବେଳେ ଜିଲିଙ୍ଗି ପୁଣି ଜଳଖିଆ ସାମଗ୍ରୀ ଧରି ଉପସ୍ଥିତ ହେଲା। କହିଲା ଦାଦା ତୋ ଲାଗି ନୂଆ ଫଳ ଆଣିଛି।

ଯୁବକ - କି ନୂଆ ଫଳ ?

ଜିଲିଙ୍ଗି - ଜାମୁ।

ଯୁବକ - ଏଃ ଆଜହୁଁ ଜାମୁ ପାଚିଲାଣି।

ଜିଲିଙ୍ଗି - ସତେ ଖରଡ଼ି ଜାମୁ, ଆମର ଏହି ଗାଁରେ ଗୋଟିଏ ଜାମୁ ଗଛ ଅଛି ସବୁଠୁ ଆଗ ପାଚେ। ନୂଆ ଫଳ ଭେଟିଲି କଣ ଦେବୁ ଦାଦା ?

ଯୁବକ - ତୁ ଯାହା ମାଗିବୁ।

ଜିଲିଙ୍ଗି - ମୁଁ ମାଗିବି ? ତୋର ମନ ତୁ ଯାହା ଦେବୁ।

ଯୁବକ - ଆଚ୍ଛା ଯେବେ ମୋ ଘରକୁ ଯିବୁ ତେବେ ଦେବି।

ଆଉ କଣ ଆଣିଛୁ ?

ଜିଲିଙ୍ଗି - ପୁଢ଼େଇ, ସସକରା ଆମ୍ବ।

ଯୁବକ - ଝାଡ଼ରେ ଏକୁଟିଆ ବୁଲୁଥାଉ ଡର ନାହିଁ ?

ଜିଲିଙ୍ଗି - ମାଈ ମୃଗ ମାଈ ସମ୍ବର ଝାଡ଼ରେ ଅଛନ୍ତି। ସେମାନେ ଡରନ୍ତି କି ? ତେବେ ମୁଁ କାହିଁକି ଡରିବି ? ସେମାନଙ୍କ ପରି ଝାଡ଼ରେ ଜନ୍ମ ଝାଡ଼ରେ ବଢ଼ିଛି। ଦିନେ ଜନ୍ମିଛି ଦିନେ ମରିବି। ବାଘ ଭାଲୁ ଦେଖିଲେ ଅଲଗ ହୋଇ ଯାଉଁ। ଯେବେ ଖାଇବାର ଥି ଖାଇବ। ଡରିଲେ ଝାଡ଼ ଛାଡ଼ି କେଉଁଠିକି ଯିବୁଁ।

ଯୁବକ - ତୁ ମତେ ପହରା ଦେଉଥିଲୁ ?

ଜିଲିଙ୍ଗି - ହଁ।

ଯୁବକ - ବାଘ ଆସିଲେ କଣ କରନ୍ତୁ ?

ଜିଲିଙ୍ଗି - ତତେ ପଛକୁ ରଖିଦେଇ ପାଟି କରନ୍ତି। ତୁ ଉଠି ବସନ୍ତୁ। ବାଘ ଉଠାଇ ଆଣିଲେ ଦୁହିଁଙ୍କୁ ଦେଖି ପଳାଇ ଯାନ୍ତା।

ଯୁବକ - ତୋର ଏତେ ଭରସା ?

ଜିଲିଙ୍ଗି - ଏତିକି ଭରସା ନଥିଲେ ଝାରରେ ରହିଛି, ଆଉ ପାହାଡ଼ ପର୍ବତ ଏକା ବୁଲୁଛି।

ଲୁନ୍ଦା ଗୃହକୁ ଗଲା ଜିଲିଙ୍ଗି ପୁଣି ଯୁବକଙ୍କୁ ତାହାର ସାଦରେ ଆନୀତ ଫଳଗୁଡ଼ିକ ଭୋଜନ କରାଇଲା। ଉଭୟେ ଏକ ସଙ୍ଗେ ଗ୍ରାମ ବାଟେ ଆସିଲେ। ଜିଲିଙ୍ଗି କିହଲା ଦାଦା ତୁ ପୁଣି କେବେ ଆସିବୁ ? ଯୁବକ କହିଲା ତୋର ବିବାହ ବେଳେ ଡାକିବୁ, ଭୋଜିଖାଇ ଆସିବି। ମିଛ କଥା କହ ନାହିଁ ଦାଦା। ମୋର ବିବାହ ଦେଖିବାକୁ ତୋ ପରି ବଡ଼ଲୋକ ଆସେ ଯେ, ଆସିବୁ ? ସେ କଥା ଛାଡ଼। ପୁଣି ଆମ ଗାଁରେ ସମ୍ବର ମାଇଲେ ମୁଁ ତତେ ଡାକି ଯିବି। ଘିଅ ମସଲା ବାସନ ବର୍ତ୍ତନ ତୋ ଘରୁ ଆଣିବି ଭଲକରି ଭୋଜି କରିବା, ହେଲା।

ଯୁବକ - ଭଉଣୀ, ଆଜିର ଭୋଜିପରି ଭଲ ବଣଭୋଜି ମୁଁ ଆଉ କେବେ ଖାଇନାହିଁ। ବଞ୍ଚିଥିବାଯାଏ ଏ କଥା କେବେ ଭୁଲିବି ନାହିଁ। ଆଜି ତୁ ମୋତେ ସନ୍ତୋଷ କରି ଖୁଆଇଛୁ।

ଲୁନ୍ଦା କାନ୍ଧରେ ଖଣ୍ଡିଏ ଟାଙ୍ଗିଆ ଧରି ଉପସ୍ଥିତ ହେଲା ତିନିଜଣ କିଛି ଦୂର ଅଗ୍ରସର ହେଲେ। ନଳବନ୍ଧ ଗ୍ରାମ ସୀମାଯାଏ ଜିଲିଙ୍ଗି ଆସି କହିଲା "ଯା ଦାଦା ଯା"। ଯୁବକ ଏହି ସ୍ନେହପୂର୍ଣ୍ଣ କୋମଳ ବିଦାୟ ବାଣୀ ମନରେ ଗୁଣି ଗୁଣି ନିଜ ଗ୍ରାମ ଆଡ଼କୁ ଅଗ୍ରସର ହେଲେ।



*('ଉତ୍କଳ ସାହିତ୍ୟ' ମାସିକ ପତ୍ରିକାର ୧୯୨୮ ସାଲ ଚୈତ୍ର ସଂଖ୍ୟାରେ ପ୍ରକାଶିତ)*

# ଆଈ ନାତୁଣୀ

ଗୋପାଳପୁରକୁ ଅନେକ ଦିନରୁ ଯାଇ ନଥିଲି । ପ୍ରାୟ ଚାରିବର୍ଷ । ଗୋପାଳପୁରରେ ମୋର ସାନ ମାଉସୀଙ୍କ ଘର । ଆମ ଗ୍ରାମରୁ ପ୍ରାୟ ପାଞ୍ଚ କୋଶ ଦୂର । ଏ ଗ୍ରାମକୁ ମୁଁ ପ୍ରାୟ ଯାଏଁ । ମାଉସୀ ମତେ ଖୁବ୍ ସ୍ନେହ କରନ୍ତି ।

ମୋର ଅଠର ବର୍ଷ ବୟସରେ ମୁଁ ପ୍ରବେଶିକା ପରୀକ୍ଷା ପାସ କଲି । କଲେଜରେ ଭର୍ତ୍ତି ହେଲାବେଳେ ପ୍ରତିଜ୍ଞା କଲି ଯେ, ବିଏ, ପରୀକ୍ଷା ନ ଦେବାଯାଏ ଗୃହମୁଖ ଦେଖିବି ନାହିଁ । ଚାରିବର୍ଷ ବିଦେଶରେ ରହିଲି । ବି.ଏ. ପରୀକ୍ଷା ଦେଇ ବୈଶାଖ ମାସରେ ଘରକୁ ଫେରିଲି । ଗୃହରେ କିଛିଦିନ ଅବସ୍ଥାନ କରି ବନ୍ଧୁବାନ୍ଧବଙ୍କ ଖୋଜା ପଡ଼ିଲା । ଗ୍ରାମରେ ସାନ ମାଉସୀଙ୍କ ଘର ଗୋପାଳପୁରକୁ ଚାଲିଲି ।

ବୈଶାଖ ମାସର ଶେଷ, ପ୍ରଚଣ୍ଡ ଖରା, ବାଟରେ ବସି ବସି ଚାଲୁ ଚାଲୁ ଦଶଘଣ୍ଟା ବେଳେ ଗୋପାଳପୁରରେ ପହଞ୍ଚିଲି । ଗ୍ରାମର ପଶ୍ଚିମରେ ଗୋଟିଏ ବଡ଼ ପୁଷ୍କରିଣୀ । ପୁଷ୍କରିଣୀ ନିକଟ ଦେଇ ଗ୍ରାମର ରାସ୍ତା । ରାସ୍ତା ନିକଟରେ ପୂର୍ବକୁ ଚାରି ଛଅଟା ଆମ୍ବ ଗଛ । ମୁଁ ସେଠାରେ ପହଞ୍ଚିଲା ବେଳେ ଗ୍ରାମରୁ ଜଣେ ବୃଦ୍ଧା ଓ ଜଣେ ଯୁବତୀ ସେଠାରେ ଉପସ୍ଥିତ ହେଲେ । ମୁଁ ବୃଦ୍ଧାଙ୍କୁ ଦେଖି ପ୍ରଣାମ କଲି । ବୃଦ୍ଧା କହିଲେ, "ବାପା, ଚାରି ବର୍ଷରେ ଗ୍ରାମରେ ପାଦ ପଡ଼ିଲା, ଆଜି ଆମେମାନେ ମନରେ ପଡ଼ିଲୁଁ" ? ତୁମେ ବଡ଼ ନିଷ୍ଠୁର ପୁତ୍ର । ଯାଅ ବାପା, ଯାଅ; ତୁମେ ମାଉସୀର ଆଖି ଫୁଟି ଯାଇଛି, ତୁମକ କେତେ ଖୋଜୁଛି, ମନେ କରୁଛି ।" ତାଙ୍କ ସଙ୍ଗରେ ଥିବ । ଯୁବତୀ ମୋତେ ଦେଖି ମୁହଁରେ ଲୁଗା ଘୋଡ଼ାଇ କାନ୍ଦିବାକୁ ଲାଗିଲା । ମୁଁ ତାହାର ମୁହଁ ଦେଖି ପାରିଲି ନାହିଁ । ଚିହ୍ନି ପାରିଲି ନାହିଁ; ପଚାରିଲି, "ଏ କିଏ ଗୋ ମାଉସୀ ?" ବୃଦ୍ଧା କହିଲେ, "ଚିହ୍ନିପାରିଲ ନାହିଁ ବାପା, କାହୁଁ ଚିହ୍ନିବ, ତାର ସେ ରୂପ, ବେଶ, ଭୂଷଣ ଅଛି ଯେ ଚିହ୍ନିବ । ତାର ପରା କପାଳ ଫାଟିଲା । ପରମାନନ୍ଦ ମିଶ୍ରଙ୍କ ନାତୁଣୀ ଅହଲ୍ୟା । ଏହା ଶୁଣି କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଲି । ଅହଲ୍ୟା ମୁଖରୁ ବସ୍ତ୍ର ଅପସାରିତ କଲା । ଚକ୍ଷୁରୁ ଦରଦର ଲୋତକଧାର ଗଣ୍ଡଦେଶ ଦେଇ ବୋହି ଯାଉଥିଲା । ଗଣ୍ଡଦେଶ ଓ ମୁଖ ମଣ୍ଡଳ ରକ୍ତାଭ ଧାରଣ କରିଥିଲା । ହସ୍ତରେ

କଙ୍କଣ ନାହିଁ, ନାକ କାନରେ ଅଳଙ୍କାର ନାହିଁ, କପାଳରେ ସିନ୍ଦୂର ନାହିଁ। ରୁକ୍ଷ କେଶା - ଶୁକ୍ଳବସନ ପରିହିତା। ଏତାଦୃଶ ବିଧବା ଲକ୍ଷଣ ଦେଖିଲି। କଣ ପଚାରିବି ? କି ପ୍ରବୋଧ ଦେବି ? ବାକ୍ୟ ସ୍ଫୁରିଲା ନାହିଁ। ଚକ୍ଷୁରୁ ଦୁଇଧାର ଲୋତକ ବହିଗଲା। ପାଦ ଚଳିଲା ନାହିଁ। କଣ କହି ସେମାନଙ୍କଠାରୁ ବିଦାୟ ନେବି ତାହା ମଧ୍ୟ ଭାବି ପାରିଲି ନାହିଁ। ବୃଦ୍ଧା କହିଲେ, "ଯାଅ ବାପା, ଯାଅ।" ଅହଲ୍ୟା କହିଲା, "ଭାଇ, ଆମ ଘରକୁ ଆସିବ ନାହିଁକି ?" "ଉପରଓଳି ଆସିବି" ବୋଲି କହି ସ୍ଥାନ ତ୍ୟାଗ କଲି।

ଅହଲ୍ୟା ଅତି ଦୂରସମ୍ପର୍କରେ ମୋର ସାନ ମାଉସୀଙ୍କର ଝିଆରୀ। ସୁତରାଂ ସମ୍ପର୍କରେ ମୋର ଭଗିନୀ। ବାଲ୍ୟକାଳରେ ମୁଁ କଲେଜକୁ ଯିବାଯାଏ ଉଭୟେ ସହୋଦର ଭାଇ ଭଉଣୀ ପରି ଖେଳ କଉତୁକ ବାକ୍ୟାଳାପ କରୁଥାଉଁ। ଆମ ଦୁହିଁଙ୍କ ମଧ୍ୟରେ ଖୁବ୍ ଆତ୍ମୀୟତା ଜନ୍ମିଥିଲା। ଗ୍ରାମର ଅନ୍ୟ କୌଣସି ବାଳକ ବାଳିକା ସହିତ ମୋର ଏତାଦୃଶ ଘନିଷ୍ଠତା ହୋଇ ନଥିଲା। ଚାରିବର୍ଷ ଦେଖା ସାକ୍ଷାତ ନାହିଁ। ଇତିମଧ୍ୟରେ କି ବିପର୍ଯ୍ୟୟ, କି ପରିବର୍ତ୍ତନ। ମୁଁ ଉନ୍ନତି ମାର୍ଗରେ ଚାଲିଅଛି। ଅହଲ୍ୟାର ଦୁର୍ଗତିର ତ ସୀମା ନାହିଁ। ମୋର ଆଶାଲତା ଫଳବତୀ ହୋଇ ମୋତେ, ତଥା ମୋର ପିତା ମାତା ଓ ସ୍ୱଜନମାନଙ୍କୁ ସୁଖୀ କରିବ। ଅହଲ୍ୟାର ଆଶାଲତା ଉନ୍ମୂଳିତ ହୋଇଅଛି। ତା ନିମନ୍ତେ ସଂସାରରେ ସୁଖ ବୋଲି କିଛିହିଁ ନାହିଁ। ସମ୍ମାନ ନାହିଁ, ସହାନୁଭୂତି ନାହିଁ, ସାହାଯ୍ୟ ନାହିଁ, କେବଳ ତାହାର ମନ୍ଦ ଭାଗ୍ୟକୁ ଛି ଓ ଧିକ୍କାର ଓ ଲାଞ୍ଛନା। "କାଳସ୍ୟ କୁଟିଳା ଗତିଃ।"

ଅହଲ୍ୟାକୁ ଚାରି ବର୍ଷ ପୂର୍ବରେ ଦେଖିଥିଲି, ସେତେବେଳେ ତାର ବୟସ ବାର ତେର; ବୟଃପ୍ରାପ୍ତ ହୋଇ ନଥିଲା, ତାର ବାଲ୍ୟଚପଳ୍ୟ ଭାଙ୍ଗି ନଥିଲା। ଗୌରବର୍ଣ୍ଣା, ଦୈହିକ ଗଠନ ପାତଳ। ଅବଶ୍ୟ ସୁନ୍ଦରୀ, ମାତ୍ର ଆଜି ଯାହା ତାର ରୂପ ଦେଖିଲି, ତା ସହିତ ପୂର୍ବ ରୂପର ତୁଳନା କରାଯାଇ ନପାରେ। ଶରୀର ହୃଷ୍ଟପୁଷ୍ଟ ହୋଇଅଛି, ଗଣ୍ଡସ୍ଥଳ ପୂର୍ଣ୍ଣ ହୋଇଅଛି, ଅଧରର ଗଠନ ପୂର୍ବାପେକ୍ଷା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର। ବର୍ଣ୍ଣର ଗୋଟାଏ ସ୍ୱତନ୍ତ୍ର ମାଧୁରୀ ଫିଟି ପଡ଼ିଅଛି। ଚାରିବର୍ଷ ପୂର୍ବରେ କନ୍ୟା ଅହଲ୍ୟା ଏବଂ ଆଜିର ବିଧବା ଅହଲ୍ୟା ମଧ୍ୟରେ ଜମିନ ଆସମାନ ଫରକ। ଅହଲ୍ୟା ବିଧବା ହେଲା, ସମାଜ ତା ହାତରୁ ଚୁଡ଼ି କଙ୍କଣ କାଢ଼ିନେଲା। ତାଡ଼, ବିଦ, ବାହାସୂତା କାଢ଼ିନେଲା। ଏହି ଅନାବଶ୍ୟକ ସ୍ଥାନାବରୋଧକାରୀ ପଦାର୍ଥଗୁଡ଼ିକ

ତାର ବାହୁ, କଚଟିର ଯଥାଯଥ ବୃଦ୍ଧିର, ମାଂସପେଶୀ ସମାବେଶର ଅନ୍ତରାୟ ଥିଲେ। ସେଗୁଡ଼ିକ କାଢ଼ି ନେବାକୁ ତାହାର ବାହୁ ଓ ହସ୍ତ ଏଡ଼େ ସୁନ୍ଦର ଦିଶୁଅଛି କି ? ତାର ରଂଗଲୁଗା ଓ ପାଟଶାଢ଼ୀ ଛଡ଼ାଇ ନେଇଅଛନ୍ତି, ଖଣ୍ଡେ ଧୋବ ଲୁଗା ଦେଇଅଛନ୍ତି। ଲୁଗା ଖଣ୍ଡ ତାର ରୂପଛଟାକୁ ବିକଶିତ କରୁଅଛି। ମୂଲ୍ୟବାନ ବସ୍ତ୍ରଦ୍ୱାରା ପରିଧାନକାରିଣୀ ସୁନ୍ଦରୀ ବୋଲି ପରିଚିତ ହୁଏ। ଏଥିରେ ପ୍ରକୃତ ସୌନ୍ଦର୍ଯ୍ୟର ଉପଲବ୍ଧିହୁଏ ନାହିଁ। ଆଜି ଅହଲ୍ୟା ଧୋବ ଲୁଗା ପିନ୍ଧୁଥିବାରୁ ତାର ପ୍ରକୃତ ରୂପ ଦିଶିଲା ସିନା ? ସେ ପୂର୍ବାପେକ୍ଷା ଅନେକ ଗୁଣରେ ସୁନ୍ଦର ଦେଖାଯାଉଥିଲା। ସୀମନ୍ତରେ ସିନ୍ଦୂରରେଖା ଦେବାକୁ ନିଷେଧ କରିଅଛନ୍ତି। ତୈଳ ବ୍ୟବହାର ଦ୍ୱାରା ମାଙ୍ଗ ଭଙ୍ଗ କରିବାରୁ ବଂଚିତ କରିଅଛନ୍ତି ସତ, ମାତ୍ର ପରସ୍ପର ଅସଂଲଗ୍ନ ଚୂର୍ଣ୍ଣକୁନ୍ତଳଗୁଡ଼ିକ ଯେ କପୋଳର କେତେକାଂଶ ଆବୃତ କରି ଅସାଧାରଣ ପ୍ରକୃତ ଶୋଭା ବଢ଼ାଇଅଛି, ତାହା କିଏ ନିଷେଧ କରିବ ? ନାକରେ ପୁଲି, ବଣ୍ଡି, ଗୁଣା, ବସୁଣୀ ନାହିଁ କର୍ଣ୍ଣରେ କର୍ଣ୍ଣଫୁଲ ନାହିଁ, ତଥାପି ତାର ଶୋଭା ଯେ ଦ୍ୱିଗୁଣ ବୃଦ୍ଧି ପାଇଅଛି। ମୁଁ ବୁଝି ପାରିଲି, ସମାଜ ବଳାତ୍କାରରେ ବେଶଭୂଷା ପରିଧେୟ ବସନାଦି କାଢ଼ିନିଏ, ମାତ୍ର ରୂପଛଟାର, ସୌନ୍ଦର୍ଯ୍ୟର ଟିକିଏ ହେଲେ ହ୍ରାସ କରି ପାରେ ନାହିଁ। ପ୍ରକୃତିଗତ ରୂପ ଲାବଣ୍ୟ ସମ୍ପଦ ବୃଦ୍ଧି ହେବାକୁ ଲାଗିବ, ତାହା କେହି ବନ୍ଦ କରିପାରିବେ ନାହିଁ। ଏ ସମ୍ବନ୍ଧରେ ସଧବା ବିଧବା ମଧ୍ୟରେ କୌଣସି ପ୍ରଭେଦ ନାହିଁ। ଉଭୟଙ୍କର କାଳ ଅନୁଗତ ରୂପ ଯୌବନ ଧୀରେ ଧୀରେ ବଢ଼ିବ, ପୁଣି ଧୀରେ ଧୀରେ ମଉଳି ଆସୁଥିବ।ତେବେ ସମାଜ ବିଧବା ପ୍ରତି ଏପ୍ରକାର କଠୋର ବିଧାନ କରିଅଛି କାହିଁକି ? କଠୋର ବିଧାନଦ୍ୱାରା ତାର ରୂପରେଖରେ ହ୍ରାସ ହେଉ ନାହିଁ, ବରଂ ସ୍ୱାଭାବିକ ସୌନ୍ଦର୍ଯ୍ୟ ବଢୁଅଛି। ଅଳଙ୍କାରାଦି ବାହ୍ୟ କୃତ୍ରିମ ଉପକରଣ ଗୁଡ଼ିକ ପୁରୁଷର ଚିତ୍ତାକର୍ଷକ, ନା ପ୍ରକୃତ ରୂପ ? ରୂପ ହିଁ ମନୋମୁଗ୍ଧକର, ଚିତ୍ତାକର୍ଷକ। ବିଧବାକୁ ଯେତେବେଳେ ରୂପଛଟାକୁ ବଞ୍ଚିତ କରିବାର ସମାଜର ଅଧିକାର ନାହିଁ, ସେତେବେଳେ ସାମାନ୍ୟ ଭୂଷଣାଦିରୁ ବଞ୍ଚିତ କରିବାଟା କେବଳ ନିଷ୍ଠୁରତାର ପରିଚାୟକ। ଏହିପରି ନାନା କଥା ଭାବୁ ଭାବୁ ମୋ ମାଉସୀ ଘରେ ଉପସ୍ଥିତ ହେଲି। ବହୁକାଳ ବିଚ୍ଛେଦ ପରେ ଆଗ ତ ପୁତ୍ର ଓ ଭଗିନୀ ପୁତ୍ର ପ୍ରତି ମାତା ଓ ମାଉସୀଙ୍କର ସ୍ନେହ ଓ ଆଦର ସମ୍ଭାଷଣ ଅଶ୍ରୁବର୍ଷଣ ସସ୍ନେହ, ଚୁମ୍ବନଦାନ ଅତି ସ୍ୱାଭାବିକ। ଆଗନ୍ତୁକ ହୃଷ୍ଟପୁଷ୍ଟ ଓ ସାବଳକାୟ ହୋଇ ଫେରିଥିଲେ ମଧ୍ୟ ଆରୋପିତ

ଦୁର୍ବଳତାର କାରଣ ଜିଜ୍ଞାସା ସ୍ଥିରନିଶ୍ଚିତ। ତାହାହିଁ ଘଟିଲା। ମାଉସୀଙ୍କଠାରୁ ମାତୃସ୍ନେହର ନିଦର୍ଶନ ପାଇ ଆପ୍ୟାୟିତ ହେଲି। ମାଉସୀଙ୍କ ପୁତ୍ର କନ୍ୟାଙ୍କ ନିମନ୍ତେ ଯାହା କିଛି ସାଙ୍ଗରେ ନେଇ ଯାଇଥିଲି, ତାହା ବଣ୍ଟନ କରି ଦେଇ ସେମାନଙ୍କ ସହିତ ସହସା ବନ୍ଧୁତା ସ୍ଥାପନ କରିନେଲି। ମାଉସୀ ଓ ସାଇ ପଡ଼ିଶାର କେତେଜଣ ବୃଦ୍ଧ, ଓ ଯୁବତୀଙ୍କ ଆଗରେ ବିଦେଶ ବାସର ଛରି ବର୍ଷର କାହାଣୀ ଏକ ନିଃଶ୍ୱାସରେ ଗାଇ ଯିବାକୁ ଲାଗିଲି। କିନ୍ତୁ ଶ୍ରୋତାମାନଙ୍କ ମଧ୍ୟରେ ଥିବା ଦୁଇ ଜଣ ବାଳବିଧବାଙ୍କ ଉପରେ ଦୃଷ୍ଟି ପଡ଼ିଯାଉଥିବାବେଳେ ଅହଲ୍ୟାର ଭାବନା ମନକୁ ବିଷଣ୍ଣ କରୁଥାଏ। ଯାହା ହେଉ ଗଳ୍ପ ଶେଷ ନ ହେଉଣୁ ରନ୍ଧନାଦି ଶେଷ ହେଲା। ସ୍ନାନ, ଆହାର ଶେଷ କଲି। ବିଶ୍ରାମ କରିବାକୁ ମାଉସୀ କହିଲେ। ମୁଁ କହିଲି ବିଶ୍ରାମ କରିବା ଅପେକ୍ଷା ପରିଚିତ ଲୋକଙ୍କୁ ଦେଖି ଆସିବା ଭଲ।

ହାତରେ ଛତା ନେଇ ବାହାରିଲି। ନିର୍ଧୂମ ଖରା, ମାଉସୀଙ୍କ ଘରଠାରୁ ପରମାନନ୍ଦ ମିଶ୍ରଙ୍କ ଘର ଟିକିଏ ଦୂରରେ। ଅନେକଗୁଡ଼ିଏ ଲୋକଙ୍କ ଘର ପାରି ହୋଇ ଯିବାକୁ ପଡ଼ିଲା। ବୋଧହୁଏ ସମସ୍ତେ ବିଶ୍ରାମ କରୁଥିଲେ, ଏଣୁ କେହି ମୋତେ ଡାକିଲେ ନାହିଁ। ମୁଁ ସିଧା ପରମାନନ୍ଦ ମିଶ୍ରଙ୍କ ଘରକୁ ଛଲିଗଲି। ଘର ମୋର ପୂର୍ବ ପରିଚିତ। କିଛି ମାତ୍ର ପରିବର୍ତ୍ତନ ହୋଇ ନାହିଁ। ଘର ବାଡ଼ି ପରିଷ୍କୃତ ପରିଛନ୍ନ। ମୁଁ ବାହାର ଘର ନ ଡେଉଁଣୁ ଅହଲ୍ୟା ଆସି ଉପସ୍ଥିତ। ବୋଧହୁଏ ମୋ ଅପେକ୍ଷାରେ ବାଟ ଅନାଇ ରହିଥିଲା। ମୋ ହାତ ଧରି ଡାକିନେଲା ଛରି ବର୍ଷ ପୂର୍ବେ ଯେପରି ହାତ ଧରି ଡାକି ନେଉଥାଏ। ତାର ମନେ ନାହିଁ ଯେ, ମୁଁ ବାଇଶି ବର୍ଷର ଯୁବକ, ସେ ଷୋଳ ବର୍ଷର ଯୁବତୀ ଓ ବିଧବା। ବାଲ୍ୟସ୍ମୃତି ଓ ବାଲ୍ୟବନ୍ଧୁତା ତାର ହୃଦୟରେ ରାଜତ୍ୱ କରୁଥିଲା। ଆଟୁଘର ପିଣ୍ଡାରେ ଢ଼ାଳେ ପାଣି ଥିଲା। ମୋ ଆଡ଼କୁ ବଢ଼ାଇଦେଇ କହିଲା, "ଗୋଡ଼ ଧୁଅ"। ମୁଁ କହିଲି, "ଦରକାର ନାହିଁ"। ଭିତରକୁ ପଶିଲାବେଳେ କହିଲା, "ଭିତରେ ତୁମର ଆଈ ଅଛନ୍ତି, ପ୍ରଣାମ କରିବ।" ଭିତରକୁ ପଶି ଦେଖେଁ, ଜଣେ ବିଧବା ଯୁବତୀ ଘରର ଏକ କୋଣକୁ ଆଉଜି ଠିଆ ହୋଇଅଛନ୍ତି। ପୁଣି ଅହଲ୍ୟା କହିଲା, "ପ୍ରଣାମ କର।" ମୁଁ ପ୍ରଣାମ କଲି। ଖଣ୍ଡେ ଆସନ ପଡ଼ିଥିଲା। ମୁଁ ଆସନରେ ବସିଲି। ସମ୍ମୁଖରେ ଅହଲ୍ୟା ବସିଲା, ଆଉ ବିଧବାଟି ଅହଲ୍ୟାର ପଛପାଖରେ ତା ପିଠିରେ ଆଶ୍ରୟ ନେଇ ତଳକୁ ମୁହଁ ପୋତି ବସିଲେ। ମୁଁ କହିଲି, "ଅଜା କାହାନ୍ତି" ? ଅହଲ୍ୟା - "ଅଜାଙ୍କ ବଦଳରେ ଏହି

ଠାକୁରାଣୀ ଗୃହକର୍ତ୍ତୀ ହୋଇଛନ୍ତି।” “ଏ କି ତାମସା - ସତ କହ ନା।” “ମୁଁ କଣ ସତ ନ କହି ମିଛ କହୁଛି ? ଏହାଙ୍କୁ ଅଜା ବୋଲି ଆଈ ବୋଲି, ଏହି ଘରର ମାଲିକ।” ଦେଖିଲି ଅହଲ୍ୟାର ପ୍ରଗଲ୍‌ଭତା ବଢ଼ିଅଛି। ବୋଧହୁଏ ବିଧବା ହେଲେ ପ୍ରଗଲ୍‌ଭତା ବୃଦ୍ଧିପାଏ - ଟିକିଏ ସ୍ୱାଧୀନତା ଓ ସ୍ୱଚ୍ଛନ୍ଦତା ମିଳେ। ନିଜ ଉପରେ ଦାୟିତ୍ୱ ଆସି ପଡ଼େ, ଏଣୁ ବାକ୍‌ପଟୁତା ଜାତ ହୁଏ। ପୁଣି କହିଲା, “ତୁମ ଅଜା ଇହଧାମରେ ନାହାନ୍ତି। ଏ ଠାକୁରାଣୀଙ୍କର ପାଣି ଗ୍ରହଣ କଲେ ମୋର ସଙ୍ଗିନୀ କରିବାକୁ। ଏହାଙ୍କୁ ଘରକୁ ଆଣି ମୋତେ ଏହାଙ୍କ ଜିମା ଦେଇ ଚାଲିଗଲେ। ସବୁ କଥା ଧୀରେ ଧୀରେ ଶୁଣିବି।” ମୁଁ ଦେଖିଲି, ଆଈଙ୍କର ନୟନରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଛି। ମୁଁ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲି, ତୁନି ହୋଇ ରହିଲି। ଅହଲ୍ୟା - “ମୁହଁ ପୋତି ତୁନି ହୋଇ ରହିଲ ଯେ।”

- “କଣ କହିବି ? ମୁଁ ଯେ ତୁମମାନଙ୍କୁ ଦେଖି କୂଳ କିନାରା ପାଉବାକୁ ନାହିଁ।”

“ଆମ ଦୁହିଁଙ୍କର ତ କୂଳ କିନାରା ନାହିଁ, ତୁମେ ତାହା ପାଇବ କିପରି ? ପୁଣି ପୂରା ଚାରିବର୍ଷ ଆମ୍ଭମାନଙ୍କୁ ଛାଡ଼ିକରି ଥିଲ, ଖୋଜ ନାହିଁ, ଖବର ନାହିଁ। ପୂର୍ବ କାହାଣୀତକ ଶୁଣ।” ଅହଲ୍ୟା ଆରମ୍ଭ କଲା, “ମୋର ଶୈଶବାବସ୍ଥାରେ ପିତାଙ୍କ ମୃତ୍ୟୁ ହେଲା, ତାହା ତୁମେ ଜାଣିଛ। ମୋର ପିତାଙ୍କର ସହୋଦର ଭାଇ ଭଉଣୀ କେହି ନଥିଲେ। ମୋର ମା ମୋତେ ଅତି ଯତ୍ନରେ ଲାଳନ ପାଳନ କଲେ। ମୋର ଆଠ ବର୍ଷ ବୟସ ହେଲାରୁ ତୁମ ଅଜା ମୋର ବିବାହର ଯୋଗାଡ଼ କରି ବସିଲେ। ନଅ ବର୍ଷରେ ବିବାହ ଦେଲେ ପରା ରୋହିଣୀଦାନର ଫଳ ମିଳେ। ସେହି ଫଳଲାଭ ନିମନ୍ତେ ଅଳଙ୍କାର ବଡ଼ ଆଗ୍ରହ। ମାତ୍ର ସେ ବର୍ଷ ମୋର ମାଙ୍କର ବିୟୋଗ ହେଲା। ବୁଢ଼ାଙ୍କୁ ଦାନ ଫଳ ମିଳିଲା ନାହିଁ। ଦଶବର୍ଷରେ କନ୍ୟାଦାନ ଦେଲେ। ତୁମେ ତ ଜାଣ ଘରେ ଅଜା, ଆଈ ଓ ମୁଁ। ଅନ୍ୟ କେହି ନ ଥିଲେ। ମତେ ବାର ବର୍ଷ ହେଲା, ମୁଁ ଘରଯୋଗ୍ୟା ନୋହିଲି, ଏଥିପାଇଁ ହୁଲସ୍ଥୁଲ କାଣ୍ଡ। ଶାଶୁଘର ଲୋକ ଆସି ଥରକୁ ଥର ଦେଖିଯିବା - ଉପଚାର କରିବା, ଔଷଧ ଖୁଆଇବା ଲାଗିଥାଏ। ସେତେବେଳେ ତୁମେ ଆସୁଥାଅ, ମାତ୍ର ଏ କାଣ୍ଡ ତୁମକୁ ଜଣାନାହିଁ। ଡେର ମଧ ଚାଲିଗଲା। ଚଉଦ ବର୍ଷରେ ଘରଯୋଗ୍ୟା ହେଲି, ଶ୍ରାବଣ ମାସରେ। ମାର୍ଗଶିରରେ ସ୍ୱାମୀ ଘରକୁ ପଠାଇବାର ସ୍ଥିର ହେଲା। ଆଶ୍ୱିନ ମାସରେ ସ୍ୱାମୀଙ୍କର ପରଲୋକ

ରହିବ କାହିଁକି ? ଶୋକ ସମ୍ବରଣ କର । ପୂର୍ଣ୍ଣକୁ ଦେଇ ଆଜିଠାରୁ ମୋତେ ପୁତ୍ର କରି ପାଇଲୁ । ଜୟନ୍ତ ଆଜିଠାରୁ ତୋର ସହୋଦର ଭାଇ । ପୂର୍ଣ୍ଣ ଆଜି ଆମ ଦୁହିଁଙ୍କି ତୋ ଜିମା ଦେଇଗଲା । ତୋତେ ସେ ନିଃସହାୟା ରଖି ଯାଇ ନାହିଁ । ତୋ ଦୁଃଖ ସୁଖରେ ଆମେ ଦୁହେଁ ଅଂଶୀଦାର । ଜୀବନ ଥିବାଯାଏ ତୋର ସାହାଯ୍ୟ କରିବୁଁ । ମୁଁ ତୋର ପୂର୍ଣ୍ଣଚନ୍ଦ୍ର, ଜୟନ୍ତ ତୋର ଭାଇ, ଛାଡ଼, ମା, ଛାଡ଼, ଆମେ କର୍ତ୍ତବ୍ୟ କାର୍ଯ୍ୟ କରୁଁ ।"

ରେବତୀ ନତଜାନୁ ହୋଇ ଏକଦୃଷ୍ଟିରେ ସଦାନନ୍ଦଙ୍କ ଚକ୍ଷୁଶୋଭୀ ପୂର୍ଣ୍ଣଚନ୍ଦ୍ରକୁ ଓ ସଦାନନ୍ଦଙ୍କୁ ଅନାଇ ରହିଛି । କ୍ରନ୍ଦନ ନାହିଁ, ବାକ୍ୟ ନାହିଁ, ଧୀର ଓ ସ୍ଥିର ଦୃଷ୍ଟି । ସଦାନନ୍ଦ ପୂର୍ଣ୍ଣଚନ୍ଦ୍ରକୁ ବକ୍ଷସ୍ଥଳରେ ଧାରଣ କରି ଆଗରେ ଚାଲିଲେ ଏବଂ ଜୟନ୍ତ ତାଙ୍କ ପଛେ ପଛେ ଚାଲିଲେ । ଘୋର ଅନ୍ଧକାର ।



*('ଉତ୍କଳ ସାହିତ୍ୟ' ମାସିକ ପତ୍ରିକା ୧୯୨୯ ସାଲରେ ପ୍ରକାଶିତ)*

# ପତିତପାବନ ଡୋରି

ପୁରୀ-ସହର, ପଞ୍ଚୁଦୋଳ ଶେଷ ହେଲା, ଚୈତ୍ରମାସ, ଗ୍ରୀଷ୍ମର ମୃଦୁ [illegible] ବହିଲାଣି, ମଧୁପଣ୍ଡାଙ୍କ ଉଚ୍ଚ ପକ୍‌କା ପିଣ୍ଡାରେ, ଦୁଇଜଣ ଯାତ୍ରୀ ତୁନି ହୋ[illegible] ଆପଣା ଆପଣା ଲୁଗା କାନିରେ ବିଞ୍ଚି ଦେଉଛନ୍ତି। ବାଲିସାହି, ଘର ଛେକ [illegible] ଏଣୁ ସମୁଦ୍ର ହାଓଆ ଆସୁନାହିଁ। ଏ ଦୁହେଁ ପୁରୀବାସୀ ନୁହନ୍ତି, ବିଦେଶାଗତ ଯାତ୍ରୀ, ବୋଧହୁଏ ତୀର୍ଥସ୍ଥାନ ବୁଲି ବୁଲି ଅସ୍ତବ୍ୟସ୍ତ ଘର୍ମାକ୍ତ ଶରୀର ଦିନ ଦୁଇ ପ୍ରହର ପେଟରେ ଅନ୍ନନାହିଁ, ମହାପ୍ରସାଦ ଆଶାରେ ବସିଛନ୍ତି।

ଉଭୟେ ଯଜ୍ଞୋପବିତଧାରୀ ଜଣ କପାଳରେ ତୋସିକାରେ ଶୁକ୍ଳ ଚନ୍ଦନ ଚିତା, ମୁଣ୍ଡର ଚୁଟି କେଶ ଏବଂ କପାଳର ଚିତା ଉଭୟଙ୍କୁ ପୃଥକ ଜାତି ବୋଲି ପରିଚୟ କରାଉଥିଲା, ଜଣେ ବ୍ରାହ୍ମଣ ଓ ଅନ୍ୟଜଣେ କ୍ଷତ୍ରୀୟ। କିଛି କ୍ଷଣ ଗଲିଗଲା। ପଣ୍ଡାଙ୍କର ଜଣେ ଲୋକ ମହାପ୍ରସାଦ ଧରି ଉପସ୍ଥିତ ହେଲା। ଗଦେଇ ବାବୁ ପାବଚ୍ଛ ନିକଟରେ ବସିଥିଲେ। ମୁଣ୍ଡରୁ ମହାପ୍ରସାଦ ବେଢ଼ା ଓଳେଇ ନେଲେ ଏବଂ ଗୋଟି ଗୋଟି କରି କୁଢ଼ୁଆ ତକ ତଳେ ରଖିବାକୁ ଲାଗିଲେ। ଏହା ଦେଖି ମିଛୁ ମିଶ୍ରେ ଅଗ୍ନିଶର୍ମା, ଉଠିପଡ଼ି ଅଣ୍ଟାରେ ହାତ ଦେଇ ଗଦେଇ ବାବୁଙ୍କ ନିକଟକୁ ଆସି କହିଲେ। ଏସବୁ ତୁମର କି ଆଚରଣ ? ମହାପ୍ରସାଦ ଗୁଡ଼ିକ ଛୁଇଁ ଦେଲ, ତୁମ ଛୁଇଁବା ଭାତ ମୁଁ ଖାଇବି ? ମଧ୍ୟାହ୍ନ କାଳରେ ଭୋକୀ ବ୍ରାହ୍ମଣକୁ ଉପବାସୀ ରଖିବା ତୁମର ବଡ଼ ମାନୀ ପଣ, ଛି, ଛି, ଛି, ବାବୁ କହିଲେ। ଏତ ମହାପ୍ରସାଦ ଏଥିରେ ଦୋଷ କଣ ? ଏଠାରେ ଗୋପାଳ ଭଣ୍ଡାରୀ ଛୁଆଁ ଅଛୁଆଁ ଭେଦ ଭାବ ନାହିଁ, ସମସ୍ତେ ମହାପ୍ରସାଦ ଛୁଇଁଥାନ୍ତି, ମହାପ୍ରସାଦରେ କୌଣସି ଦୋଷ ଥାଏ କାହିଁ। ମୁଁ ଏଠାରେ ସାତ ଆଠ ଠାରୁ ରହି ଦେଖୁଛି। ମୁଁ ଛୁଇଁଦେଲି ମାରା ହୋଇଗଲା।

ମିଛୁ ମିଶ୍ରଙ୍କର କ୍ରୋଧ ଦ୍ୱିଗୁଣିତ ହେଲା। ଲଜ୍ଜା ନାହିଁ। ମୁଁ ଶୋତ୍ରୀୟ ବ୍ରାହ୍ମଣ ତୁମ ଛୁଆଁ ପଦାର୍ଥ ଖାଇବି ? କି ଦୁର୍ଭାଗ୍ୟ, ଏଠାକୁ ଆସି ପରା ତୁମ ଆଜି ଜାତି ଶ୍ରେଷ୍ଠ ହୋଇଗଲା। ତୁମେ କାମକୁ କ୍ଷତ୍ରିୟ। ତୁମେ ବର୍ଣ୍ଣ ଶଙ୍କର, ତୁମେ ଅସ୍ପୃଶ୍ୟ। ତୁମ ସଙ୍ଗରେ ଆସିଲି ବୋଲି ଜାତି ଧର୍ମ ଛଡ଼ାଇ ଘରକୁ ଫେରିବି ?

ଏତାଦୃଶ କଟୂକ୍ତି ଶ୍ରବଣ କରି କେହି ଲୋକ, ସହ୍ୟକରି ରହିବା ଅସମ୍ଭବ। ଗଦେଇ ବାବୁ ଧୀର ପ୍ରକୃତିର ଲୋକ। ବୁଝି ବିଚାରି କାର୍ଯ୍ୟ କରନ୍ତି। ଭାବିଲେ ତୀର୍ଥସ୍ଥଳ। ବ୍ରାହ୍ମଣ, କେ ଜାଣି ଅବା ମହାପ୍ରସାଦ ହାତ ଦେଇ କାଢ଼ିବା ତାଙ୍କ ପକ୍ଷରେ ଉଚିତ ନଥିଲା। ହଉ ତୁମକୁ ସାହାଯ୍ୟ ଦେଇ ଏଠାକୁ ଆଣିବାର ଫଳ ପାଇଲି। ଆଜିଠାରୁ ତୁମ ଆମ ସଙ୍ଗ ତ୍ୟାଗ ହେଲା। ଭଜନା, ମାଲମତା ଧରି ଶୀଘ୍ରଯିବା। ଭଜନା ଗଦେଇ ବାବୁଙ୍କର ଗୋପାଳ ଚାକର ଓ ବିଶ୍ୱାସୀ ଲୋକ। ଭଜନା କହିଲା, ବାବୁ ମହାପ୍ରସାଦ ଓ ବ୍ରାହ୍ମଣର ନୁହେଁ ତୁମ ପଇସାରେ କିଣା, ବ୍ରାହ୍ମଣ ନଖାଇଲେ, ନଖାଉ, ତୁମେ ଥୋଡ଼ା ନିଅ, ମୁଁ ଥୋଡ଼େ ଖାଇ ସାରିଲାରୁ ଚାଲିବା। ବ୍ରାହ୍ମଣ ପଡ଼ିଥାଉ। ପୁଣି ଧୂନ୍ଦିଆ ବେହେରା ଆସି ନାହିଁ। ତାକୁ କଣ ଛାଡ଼ିଦେଇ ଯିବା।

ଗଦେଇ ବାବୁ କହିଲେ ମୋର ସବୁକାର୍ଯ୍ୟ ଶେଷ ହୋଇଛି। ପଣ୍ଡାଙ୍କୁ ବିଦାୟ ଦେଇ ସୁଫଳ ଘେନିଛି, ଆଉ କଣେ ଏଠି ରହିବି ନାହିଁ। ମହାପ୍ରସାଦ ଏଠାରେ ଥାଉ, ଚାଲ। ତୋତେ ବାଟରେ ଖୁଆଇବି। ଧୂନ୍ଦିଆ ବେହେରା ଯେବେ ବାଟରେ ମିଶିପାରେ ଓ ଭଲ ନୋହିଲେ ଆମେ ଦୁହେଁ ଚାଲିଯିବା, ଭଜନା ଆଉ କିଛି ନକହି, ବୋକଚ ସଜାଡ଼ିବାକୁ ଲାଗିଲା, ପଣ୍ଡାଙ୍କ ଲୋକଟି ଆଁ କରି କହି ରହିଁଥିଲା। ଗଦେଇ ବାବୁ ତାକୁ ବକ୍‌ସିସ୍ ଦେଇ ବାହାରିଲା ବେଳେ ସେ ଲୋକଟି କହିଲା କିପରି ଲୋକଙ୍କୁ କିପରି କଥା ଦେଖତ। ପଇସା ପତ୍ର ଖର୍ଚ୍ଚ କରି ବାବୁ ତୀର୍ଥକୁ ଆଣିଲେ, ତାଙ୍କ ପ୍ରତି ପୁଣି ଏପରି ଭର୍ତ୍ସନା, ଏ ବ୍ରାହ୍ମଣ କି କୁକୁର ଲୋ, ମା, ମାବୁ ଉପାସରେ ଯିବ କିଆଁ, ଚାଲ ବଡ଼ ଦାଣ୍ଡ ତାକୁ ମୁଁ ମହାପ୍ରସାଦ ଆଣି ଯୋଗାଇବି। ଏତେ ଦିନ ତୁମ ଠାରୁ ଖାଇଛି ଏତିକି କରି ନାହିଁ ଆଗେ ଆଗେ ଚାଲିଲା। ମିଛୁ ମିଶ୍ରେ ଉର୍ଦ୍ଧ୍ୱ ଦୃଷ୍ଟି ହୋଇ କହିଲେ, ମହାପ୍ରସାଦତକ ସେହିପରି ରହିଲା। କିଛି କ୍ଷଣ ପରେ ମିଛୁ ମିଶ୍ରେ ଭାବିଲେ, ବାବୁତ ଛାଡ଼ିଗଲେ। ଧୂନ୍ଦିଆ ବେହେରା ଆସିବକି ନାହିଁ। ଏତ ଅନେକ ଗୁଡ଼ିଏ ମହାପ୍ରସାଦ, ଏହା ବିକ୍ରୟ କରି ଦେବା ଉଚିତ। ବିକ୍ରିକରି ଦେଇ ଆଉ କିଛି ଭୋଜନ କରି ପିଣ୍ଡାରେ ତୁନି ହୋଇ ଶୋଇଗଲେ। ଦୁଇ ତିନି ଘଣ୍ଟାପରେ ଧୂନ୍ଦିଆ ବେହେରା ହସ ହସ ହୋଇ ଉପସ୍ଥିତ ହେଲା, କିହୋ ନନା ଶୋଇଛକି ଡାକିଦେଇ କହିଲା; ମହାପ୍ରଭୁଙ୍କ ଦର୍ଶନ ମିଳିଲା, ମିଛୁ ମିଶ୍ରେ ଚମକି ପଡ଼ିଲା ପରି କହିଲେ କଣ ? ପ୍ରଭୁଙ୍କ ଦର୍ଶନ

ମିଳିଲା, ବାହାରରୁ ସେହି ପତିତପାବନ ଲେଖା ରୂପ ଦେଖିଥିବୁ, ତୁ କିଏ, ଜଗନ୍ନାଥ କିଏ।

ନାଇ ହୋ, ସତ କଥା ମୁଁ ଯାହାକୁ ଦେଖିବାକୁ ଆସିଥିଲି ତାକୁ ଦେଖିଲି, ଶ୍ରୀମୁଖ ନଦେଖି ମୁଁ କାହୁଁ ଫେରୁଥିଲି ? ଏତ ତୁମ ଗ୍ରାମ ଜଗନ୍ନାଥ ନୁହନ୍ତି ଯେ ମୁଁ ଭିତରକୁ ପଶିବାକୁ ଥରହର ହେବି। କି ତୁମେ ବା ତୁମପରି ଦୁଇ ଚାରିଜଣ ବ୍ରାହ୍ମଣ ବାଡ଼ିଧରି ଅଧବାଟରୁ ତଡ଼ିଦେବେ। ଏଯେ ବୁଦ୍ଧାବତାର ସ୍ୱୟଂ ଜଗନ୍ନାଥ ସ୍ୱାମୀ, ପତିତପାବନ। ଏହାଙ୍କୁ ଛୁଇଁଲେ, ଦେଖିଲେ ମୁଁ ଦୋଷୀ ହେବି ନାହିଁ ବୋଲି ମୋର ବିଶ୍ୱାସ, ଏଣୁ ପଇସା ଖର୍ଚ୍ଚ କରି ଭିତରକୁ ଯାଇ ଦେଖି ଆସିଲି। ଜୀବନ ସାର୍ଥକ ହେଲା।

ଯେଉଁଠାରେ କି ଜାତି ଅଜାତି ଉଚ୍ଚନୀଚ ଧନୀ ନିର୍ଦ୍ଧନୀର ଭେଦଭାବ ନାହିଁ। ସେହି ପ୍ରଭୁ ସ୍ୱୟଂ ପତିତପାବନର ଶ୍ରୀମୁଖ ଦର୍ଶନ। ପ୍ରଜ୍ୱଳିତ ଅଗ୍ନିରେ ଘୃତାହୁତି ପଡ଼ିଲା ପରି ମିଚ୍ଛୁ ମିଶ୍ରେ କ୍ରୋଧାନ୍ୱିତ ହୋଇ କହିଲେ ଧୋବା, ଜଗନ୍ନାଥଙ୍କ ଦୃଷ୍ଟିରେ ଧୋବା ବ୍ରାହ୍ମଣ ସମାନ। ମୁଁ ଶ୍ରୋତ୍ରୀୟ ବ୍ରାହ୍ମଣ ତୁ ଶ୍ମଶାନ ଚଣ୍ଡାଳ, ମୁଁ ଆଉ ତୁ, ସମାନ। ଯା, ଯା, ଯା।

ନା ନା ରାଗୁଛ କାହିଁକି ? ତୁମେ ଆଉ ମୁଁ ସମାନ କି ନା, ତାହା ପରୀକ୍ଷା କରୁଛି କିଏ ? ଜଗନ୍ନାଥ ତ ଚଣ୍ଡାଳ ବୋଲି ସିଂହଦ୍ୱାରରୁ ଫେରାଇ ନାହାନ୍ତି, ତୁମ କଥାର ମୂଲ୍ୟ କେତେ ? ତୁନି ହୁଅ ନନା, ଗଲା କଥାତ ଗଲାଣି ଗଦେଇ ବାବୁ କୁଆଡ଼େ ଗଲେ ? ଭଜନା ବି ଦେଖାନାହିଁ କେଉଁଆଡ଼େ ଗଲେ କି, ଆରେ ତାଙ୍କ ଲୁଗାପଟା ବି ମଧ ନାହିଁ କଣ ନନା ?

କଣ ସେ କଥା କହିବି, ପ୍ରକୃତ କଥା କହିବାରୁ କ୍ରୋଧ ହୋଇ, ମତେ ଛାଡ଼ି ଘରକୁ ପଳାଇଲେ। କଣ କହିଲକି, ତାଙ୍କ ପରି ଲୋକ ତୁମ ସଙ୍ଗରେ ରହିବା ଅସମ୍ଭବ ତ ନିଶ୍ଚୟ। ତେବେ ଆଜିଯାଏ ଥିଲେ ଯେ ସେତ କିଛି ସାଧାରଣ କାରଣରୁ ଯାଇ ନଥିବେ। ତୁମର ଓ ସେହି ଦୁଷ୍ଟ ପ୍ରକୃତି ଅଛି।

କଣ କହିଲୁ ? ଛୋଟ ମୁହଁରେ ବଡ଼ କଥା !

ହେଲେ ହେଲା ଗଦେଇ ବାବୁ ଚାଲିଗଲେ ବୋଲି ମୁଁ ଚାଲିଯିବିକି। ମୁଁ ସିନା ତାଙ୍କ ସଙ୍ଗରେ ଆସିଥିଲି ତୁମ ସଙ୍ଗରେ ତ ଆସିନାହିଁ।

ମିଛୁ ମିଶ୍ରେ କହିବାକୁ ଯାହା ଥିଲେ, ତୁ ଥିଲେ କେତେ ଗଲେ କେତେ। ଧୋବା ସଙ୍ଗରେ ବ୍ରାହ୍ମଣର କି ଭାବ ଅବା କି ସଙ୍ଗ, ମାତ୍ର କଣ ଭାବିଲେ କେଜାଣି ତାହା ନକରି ତୁନୀ ହେଲେ। କିଛି କ୍ଷଣପରେ କହିଲେ ଧୂନ୍ଦିଆ କାଲି ସକାଳେ କଣ ଘରକୁ ଫେରିବା।

ଗ୍ରାମକୁ ନଫେରି ଏଠାରେ କଣ ସବୁଦିନ ରହିଥିବା କି ? ହେଲେ କିପରି ନିର୍ବିବାଦରେ ଘରକୁ ଫେରିବି ଏହି ଚିନ୍ତା।

ଗଦେଇ ବାବୁ ବଡ଼ଦାଣ୍ଡରେ ଭୋଜନ ଶେଷକରି ଭାବିଲେ ମୁଁ ଏପରି ରାସ୍ତାରେ ଗ୍ରାମକୁ ଯିବି ଯେ ଯେପରିକି ଆଉ ସ୍ୱଗୃହକୁ ଯିବାଯାଏ ମିଛୁ ସହିତ ପୁନର୍ବାର ବାଟରେ ଯେପରି ଦେଖା ନହୁଏ। ଖୋରଧା ବାଟଦେଇ ଫେରିବେ ବୋଲି ଆଗରୁ ପ୍ରସ୍ତାବ ହୋଇଥିଲା, ଏଣୁ ଗଦେଇ ବାବୁ, ସେ ବାଟରେ ନଯାଇ ଭୁବନେଶ୍ୱର ଦର୍ଶନ ପରେ ଧବଳେଶ୍ୱର ଓ କପିଳାସ ଦର୍ଶନ କରିବାର ଅଭିପ୍ରାୟରେ ବଡ଼ ରାସ୍ତା ଧରି ଅନେକ ଗୁଡ଼ିଏ ରାସ୍ତା ସେଦିନ ଚାଲି ଆସିଲେ। ପରଦିନ ପ୍ରତ୍ୟୁଷରୁ ମିଛୁ ମିଶ୍ରେ ଓ ଧୂନ୍ଦିଆ ଗ୍ରାମକୁ ବାହାରିଲେ। ବାହାରିବା ଆଗରୁ ମିଶ୍ରେ କହିଲେ, ଭୁବନେଶ୍ୱର ଦର୍ଶନ କରି ଫେରିଲେ ଭଲହୁଅନ୍ତା ସେହିବାଟେ ଯିବାକୁ ଧୂନ୍ଦିଆ, ଧୂନ୍ଦିଆ କହିଲା ସେ ବାଟେ ଗଲେ ବା ମୋର ଲାଭ କଣ ? ଜଗନ୍ନାଥଙ୍କ ପରି ଭୁବନେଶ୍ୱର ଦର୍ଶନ ମିଳିବକି ? ବିଶେଷତଃ ତୁମେ ଅଛ, ଆଗରୁ ଧୋବା ଧୋବା ବୋଲି ବାରଥର ହୁରି ପକାଉଛ। ଯାହାକୁ ଦେଖିବାକୁ ଆସିଥିଲି ତାକୁ ତ ଦେଖିଲି। ଆଉ କୌଣସିରେ ପ୍ରୟୋଜନ ନାହିଁ। କାରଣ ସେମାନେ ମୋତେ ଦେଖା ଦେବେ ନାହିଁ। ଯେଉଁ ବାଟରେ କିଛି ଦେବା ନାହାନ୍ତି ସିଧାସଳଖ ସେହି ବାଟ ଧରି ଚାଲ। ଆଉ ଗୋଟିଏ କଥା ତୁମେ ତ ବ୍ରାହ୍ମଣ ବୃରି କଲେ ମୁଁ ଛାଏଁ ଛାଡ଼ି ପଳାଇବି। ହେଉ ତୋ କଥା ହେଉ କହି ଉଭୟେ ଖୋରଧା ବାଟ ଧରିଲେ।

ବନ ଦାଣ୍ଡକୁ ଆସିଲାକ୍ଷଣି ଧୂନ୍ଦିଆ ଖଣ୍ଡେ ପିଉଳ କିଣିଲା। ତାହା ଦେଖି ମିଛୁ ମିଶ୍ରେ କହିଲେ ତୁତ ଖଣ୍ଡେ ପିଉଳ କିଣିଲୁ ବଡ଼ କରି ଖଣ୍ଡେ କିଣିଥିଲେ ଦୁହିଁଙ୍କର ଭାତରନ୍ଧା ବାଟରେ ଚଳିଥାନ୍ତା।

ନନା ବୁଝି ବିଚାରି କାମ କଲେ ପ୍ରମାଦ ନପଡ଼ଇ ଭଲେ। ତୁମେ ତ ରାଗୀଲୋକ, ଯାଉଁଯାଉଁ ବାଟରେ କେବେ କହି ବସିବ ମୁଁ ଧୋବାର ରାନ୍ଧୁଣିଆଁ

ଯେ ତୋ ଲାଗି ଭାତରାନ୍ଧି ଦେବି। ମୁଁ ତ ପଇସା ବାଲା ନୁହେଁ ଯେ ଦୁଇଜଣଙ୍କ ଭଳି ପିତ୍ତଳ ଟିଏ କିଣନ୍ତି, ମୁଁ ତ ଧୋବାଲୋକ ତୁମକୁ କଷ୍ଟ ଦେବି କାହିଁକି ? ମୋ ପାଇଁ ମୁଁ ନିଜେ ରାନ୍ଧି ନେବି।

ଉଭୟ ଆଗ ପଛ ହୋଇ ଚାଲି ଥାଆନ୍ତି। ଖୋର୍ଦ୍ଧା ଆମ୍ବ ତୋଟାରେ ଆରଦିନ ସନ୍ଧ୍ୟାରେ ଆସି ପହଞ୍ଚିଲେ। ଧୁନ୍ଦିଆ ଭାତ ରାନ୍ଧି ଖାଇଲା। ମିଛୁ ମିଶ୍ରେ କିଛି ଜଳଖିଆ ଖାଇ ଶୋଇଲେ। ରାତ୍ର ଅଧ ସରିକି, ମିଛୁ ମିଶ୍ରେଙ୍କୁ ପୋଖରୀ ତଲବ ଦେଲା। ଝାଡ଼ା ଫେରି ଆସି ଶୋଇଛନ୍ତି, ପୁଣି ଝାଡ଼ା, ଧୁଳିଆକୁ ଉଠାଇଲେ। ତାଠାରେ ନାନାପ୍ରକାର ଔଷଧ ଥାଏ। ଗୋଟିଏ କର୍ପୂର ବଟି ଦେଲା ମିଛୁ ମିଶ୍ରେ ତାହା ପାନ କଲେ। ପୁଣି ଝାଡ଼ା ପୁଣି ବାନ୍ତି। ମିଛୁ ମିଶ୍ରେ କହିଲେ ଭାଇ ଧୁନ୍ଦିଆ ରକ୍ଷା କର ହାତଗୋଡ଼ ଘିଚି ନେଉଛି।

ଘସି ଦେବି କି ?

କଣ ପଚାରୁଛୁ ଜୀବନ ଗଲାବେଳେ ଭାଇ କି ଜାତି କି ବିଚାର। ଘସିଦେ ଭାଇ, ଜୀଇବାର ଆଉ ଆଶା ନାହିଁ।

ଚିନ୍ତା କର ନାହିଁ। ସାମାନ୍ୟ ଝାଡ଼ା ସିନା, ଆଉ ଗୋଟିଏ ବଟିକା ଖାଇଲେ ଭଲ ହୋଇଯିବ।

ଗୋଟିଏ ବଟିକା ଖାଇଲେ, ଧୁନ୍ଦିଆ ଘସୁଛି, ଆଉ ତେଣିକି ଉଠିକରି ଝାଡ଼ାଯାଇ ପାରିଲେ ନାହିଁ। ସେହିଠାରେ ଝାଡ଼ାବାନ୍ତି। ଧୁଳିଆ ସଫା କରୁଥାଏ ଏବଂ ବରାବର ଘସୁଥାଏ ଥରେ ମିଛୁ ମିଶ୍ରେ କହିଲେ। ଭାଇ....... ବଡ଼ ତୃଷ୍ଣା। କଣ୍ଠ ଶୁଖି ଯାଉଛି, ଟିକିଏ ପାଣି ଦେ। ନନା ଏ ବଡ଼ ବିଷମ କଥା। ମୁଁ ଧୋବା ଜାଣୁ ଜାଣୁ ତୁମକୁ ପାଣି ଦେବି କିପରି କହୁଛ।

ସେ କଥା କହନା ଭାଇ। କଷ୍ଟ ଦେନା, ମଲି ମଲି, ଧୁନ୍ଦିଆ ଭାବିଲା ଭଗବାନ ମୋର ଛାଇ ମାଡ଼ିବାକୁ ଯେ ଘୃଣା କରୁଥିଲେ, ଆଜି ବିପତ୍ତି ପଡ଼ିବାରୁ ସେ ପାଣି ମାଗୁଛନ୍ତି, ଦେଲେ ଦୋଷ ନ ଦେଲେ ଦୋଷ। ପ୍ରାଣୀର ପ୍ରାଣବାୟୁ ଉଡ଼ିଯିବ। ଭଗବାନ ତୁହିଁ ସାକ୍ଷୀ। ନନା ମୋର ଦୋଷ ନାହିଁ, ତୁମର ଅନୁରୋଧରୁ ମୁଁ ଏହା କରୁଛି। ପାଣି ନିଅ ପିଅ।

ଧୁନ୍ଦିଆ ହାତରୁ ପାଣି ନେଇ ମିଛୁ ମିଶ୍ରେ ଗଳଗଳ କରି ପିଇ ପକାଇଲେ। ପୁଣି ଆଉଗୋଟିଏ ବଟିକା, କିଛିକ୍ଷଣ ପରେ ନିଦ୍ରା ହେଉ ବା ତନ୍ଦ୍ରା ହେଉ ମିଛୁ ମିଶ୍ରେ ତୁନି ହୋଇ ରହିଲେ। ଧୁନ୍ଦିଆ ଭାବିଲା ବଡ଼ ବିଷମ ସମସ୍ୟା ହେଲା। ଏହାଙ୍କୁ ଶୁଶ୍ରୂଷା କରିବା ମୋ ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ। ଏ ବ୍ରାହ୍ମଣ ମୁଁ ଧୋବା ପାଣି ପିଇବାକୁ ଦେଲି ହୁଏତ ପୁଣି ଭାତଖାଇବାକୁ ଦେବାକୁ ହେବ। ଏହା ତ ବଡ଼ ଅନ୍ୟାୟ। ଜାଣୁଜାଣୁ ଏପରି କାର୍ଯ୍ୟ କରିବି କିପରି। ଏହାର ଗୋଟିଏ ଉପାୟ କରିବ ବୋଲି ଭାବିଲା। ସେତେବେଳକୁ ପାହାନ୍ତା ହେଲାଣି। ଦାନ୍ତପତ୍ର ଘଷିଲା। ଗାଧୋଇ ପଡ଼ିଲା, ପିତଳରେ ମୁଠାଏ ଭାତ ରାନ୍ଧି ଭାବିଲା, ମିଛୁ ମିଶ୍ରଙ୍କୁ ଡାକ୍ତରଖାନାରେ ରଖାଇ ଦେଇ ଏଠାରୁ ଚାଲିଯିବ। ଭାତରନ୍ଧା ସରିଲା ସକାଳ ମଧ୍ୟ ହେଲା ଭାତକୁ ଘୋଡ଼ାଇ ଦେଇ ପୋଲିସଖାନାକୁ ଗଲା। ସେଠାରେ ଖବର ଦେଇ ଡାକ୍ତରଖାନାର ଲୋକ ନେଇ ଆସିଲା। ବସାରେ ପହଞ୍ଚି ଧୁନ୍ଦିଆ ଦେଖେତ ମିଛୁ ମିଶ୍ରେ ସେ ଚୁଲି ପାଖରେ ଶୋଇଛନ୍ତି। ପିତଳରୁ ପେଜତକ ଶେଷ।

ନନା ଏ କଣ କଲ। ମୋର ରନ୍ଧା ଭାତ ପେଜକୁ ଖାଇଲ। ସେ ଯାହା ହେଉ ତୁମ ପକ୍ଷରେ ଏ ପଥ୍ୟ ନୁହେଁ।

ଭାଇ ମୁଁ କଣ ଆଉ ଜୀଇଁବି? ତାତିଲା ପେଜକୁ ମନ ଡାକିଲା, ପିଇ ପକାଇଲି ଭଲ ଲାଗିଲା। ଏବେ କି ବିଗିଡ଼ୁ।

ମୁଁ ଡାକ୍ତରଖାନାରୁ ଲୋକ ଆଣିଛି ସେ ତୁମକୁ ନେଇଯିବେ, ସେଠାରେ ରଖି ଚିକିତ୍ସା କରିବେ। କିଛି ଚିନ୍ତା କର ନାହିଁ। ଭଲ ହୋଇଯିବ।

ମିଛୁ ମିଶ୍ରେଙ୍କୁ ନେଇଗଲେ। ଧୁନ୍ଦିଆ ଭାତତକ ପକାଇ ଦେଲା। ପିତଳକୁ ପରିଷ୍କାର କରି ମାଜି ପକାଇଲା। ଆପଣାର ଗଣ୍ଠିରା ଧରି ସଙ୍ଗେ ସଙ୍ଗେ ଚାଲିଲା। ମିଛୁ ମିଶ୍ରେଙ୍କୁ ଡାକ୍ତରଖାନାରେ ରଖିଲେ। ଧୁନ୍ଦିଆ କହିଲା ନନା ମୁଁ ଯାଉଛି, ତୁମେ ଭଲ ହୋଇ ଗଲେ ଯିବ। କିଛି ଚିନ୍ତା କରିବ ନାହିଁ।

ତୁମତେ ଛାଡ଼ିକରି ଯାଆନା ଭାଇ!

ମୁଁ ଏଠାରେ ରହିବା ଅସମ୍ଭବ।

ତୁମେ ତ ଡାକ୍ତରଖାନାରେ ଅଛ। ସେମାନେ ତୁମର ଚିକିତ୍ସା କରିବେ। ଖାଇବାକୁ ଦେବେ। ମୁଁ ଥାଇ କରିବି କଣ। ମତେ ଖାଇବାକୁ ଦେବ କିଏ? କେତେ

ଦିନରେ ତୁମେ ଭଲ ହେବ ତାର ଠିକଣା ନାହିଁ । ମୋର ଯିବା ଭଲ । ମିଛୁ ମିଶ୍ରଙ୍କରଦ୍ୱାରେ ଉପସ୍ଥିତ ହେଲା । କିଛି କହି ପାରିଲେ ନାହିଁ ଧୂଳିଆ ପ୍ରସ୍ଥାନ କଲା ।

କେତେ ଦିନ ଉତ୍ତାରୁ ଅପରାହ୍ନ ତିନି ଘରିଘଣ୍ଟା ବେଳେ ଧୂନ୍ଦିଆ ଗ୍ରାମରେ ପହଞ୍ଚିଲା । ଗ୍ରାମରୁ ତିନି ମାଇଲ ଦୂରବର୍ତ୍ତୀ ଯୋଡ଼ ନିକଟ ଆମ୍ବ ତୋଟାରେ ଘଡ଼ିଏ ବିଶ୍ରାମ କଲା । ଗୋଡ଼ହାତ ମୁହଁ ଧୋଇ ଗଣ୍ଠିଲି ଖୋଲି ପିପିଲି ନିର୍ମିତ ଚକ୍ର ଚିହ୍ନିତ ଲାଲ କୁରୁତାଟି କାନଖୋଇ ଟୋପିଟା ଖୋଲି ପିନ୍ଧିଲା । ଦୁଇଟି ତୁଳସୀ କାଠି ମାଳୀ ତିନିଖଣ୍ଡ ଶ୍ରୀ କପଡ଼ା ଗଳାରେ ଲମ୍ବାଇଲା । ଚୈତ୍ରମାସ ଖରା, ଭାରି ଗରମ ଏ ସମୟରେ ଗୁଲଦାର କୁରୁତା ଲଗାଇବାର ଆଦୌ ପ୍ରୟୋଜନ ନଥିଲେ ସୁଦ୍ଧା ତୀର୍ଥ ଯାତ୍ରାର ପରିଚୟ ନିମନ୍ତେ ଧୂଳିଆ ଏପରି କଲା । ସାଧାରଣତଃ ପୂର୍ବ କାଳିଆ ତୀର୍ଥଯାତ୍ରୀମାନେ ଏପରି ବେଶରେ ଗ୍ରାମକୁ ଫେରନ୍ତି । ଏଥିରେ ଧୂନ୍ଦିଆର ଅପରାଧ କଣ ? ବୋକରଙ୍କୁ ମୁଣ୍ଡାଇଲା । ଲାଲ ଗୌରୀବେତ ସଂଯୋଜିତ ତାଳପତ୍ର ଛତାକୁ ଧରି ଦକ୍ଷିଣ ହସ୍ତରେ ନିଜର ବାଉଂଶ ବାଡ଼ିକୁ ଧରି ଧୂନ୍ଦିଆ ଗ୍ରାମରେ ପ୍ରବେଶ କଲା ।

ପରିଚିତ ବାଳକମାନେ ଦେଖି ଚିତ୍କାର କଲେ । ଲୋକେ ଆସି ପହଞ୍ଚି ଗଲେ । କାହାକୁ ନମସ୍କାର କାହାକୁ ଆଶୀଷ ଦେଇ ଦେଇ ଚାଲିଛି । ଉତ୍ତର ଦେବାର ସମୟ ନାହିଁ । ଗୃହ ପର୍ଯ୍ୟନ୍ତ ଅନେକ ଲୋକ ଚାଲିଲେ । ଯେଉଁମାନେ ଧୋବା ଘରକୁ ଯାଆନ୍ତି, ସେମାନଙ୍କ ଘର ଅଗଣା ପର୍ଯ୍ୟନ୍ତ ଗଲେ । ଯେଉଁମାନଙ୍କ ପ୍ରତି ଧୋବାଘର ନିଷେଧ ସେମାନେ ବାଟରେ ରହିଲେ । ଗୋଡ଼ହାତ ଧୋଇ ଧୂନ୍ଦିଆ ବସିଲା । ନାତି ନାତୁଣୀମାନେ ଗଣ୍ଠିଲି ଖୋଲିବାକୁ ଅସ୍ତବ୍ୟସ୍ତ କରୁଥାନ୍ତି । ବେଳ ବୁଡ଼ିଲା ଧୂନ୍ଦିଆ ଗଦେଇ ବାବୁ ଘରକୁ ଯାଇ ଦେଖେ ଯେ ସେ ଫେରି ନାହାନ୍ତି ତାଙ୍କ ଖବର ସବୁ ଜଣାଇ ଦେଇ ମିଛୁ ମିଶ୍ରଙ୍କ ଘରକୁ ଯାଇ କହିଲା ଯେ ମିଶ୍ରେ ବେମାର ହେବାରୁ ଖୋରଧା ଡାକ୍ତରଖାନାରେ ଚିକିତ୍ସା ହେଉଛନ୍ତି । ଚିନ୍ତା ନାହିଁ ସେ ଅଳ୍ପ ଦିନ ମଧ୍ୟରେ ଭଲ ହୋଇ ଉପାୟାନ୍ତର ନଦେଖି ମୁଁ ଆଗ ଆସିବାକୁ ବାଧ୍ୟ ହେଲି । କେହି କେହି କହିଲେ ଏକ ସଙ୍ଗରେ ଯାଇ ଜଣଜଣକରି ଆଗ ପଛ ହୋଇ ବାହାରି ଆସିବାଟି ଠିକ୍ ନୁହେଁ । କେହି କେହି କହିଲେ ସୁବିଧା ଅସୁବିଧା ନେଇ କଥା, ଆମେ ଗାଁରେ ଥାଇ ସେଥିର ଆଲୋଚନା କଲେ ଲାଭ କଣ । ଧୂନ୍ଦିଆ ସଜ୍ଜନ ଲୋକ, ତା କଥା କେହି ଅବିଶ୍ୱାସ କରିବାର ନୁହେଁ ।

ମିଛୁ ମିଶ୍ରଙ୍କ ସମ୍ବନ୍ଧରେ ତାଙ୍କର ଭାଇ ଓ ଅନ୍ୟାନ୍ୟ ଲୋକେ ବାରମ୍ବାର ଅନେକ ପ୍ରଶ୍ନ କଲେ। ସମସ୍ତ କଥା ଠିକ୍‌ରୂପେ ପ୍ରକାଶ କଲା। ମାତ୍ର ସେବା କଥା ତାର ପାଣି ଓ ପେଜ ମିଛୁ ମିଶ୍ର ପିଇ ଥିବା କଥା ଆଦୌ ପ୍ରକାଶ କଲା ନାହିଁ। ଧୁନ୍ଦିଆ ଭାବିଲା। ଏହା ପ୍ରକାଶ କରି ଲାଭ କଣ ? ମୋର କିଛି ମହତ୍ତ୍ୱ ବଢ଼ିବ। ମୁଁ ଯେଉଁ ଧୋବାକୁ ସେହି ଧୋବା ମିଛୁ ମିଶ୍ରେ ଯେଉଁ ବ୍ରାହ୍ମଣକୁ ସେହି ବ୍ରାହ୍ମଣ। ଅଧିକନ୍ତୁ ଅନ୍ୟର ଅପମାନ କଥା ପ୍ରକାଶ କଲେ କେବଳ ଶତ୍ରୁତା ବୃଦ୍ଧି ହେବ। ଜୀବନ ଯିବାଯାଏ ଏହା ମୁଁ ପ୍ରକାଶ କରିବ ନାହିଁ। ମିଛୁ ମିଶ୍ରେ ନିଜେ ଯଦି ପ୍ରକାଶ କରନ୍ତି ସେ କଥା ସେ ବୁଝିବେ।

ଅନେକ ଦିନଯାଏ ଧୁନ୍ଦିଆର ତୀର୍ଥ ଦର୍ଶନର ଡାଏରୀ ଚାଲିଲା। ଦିନେ ଦୁଇ ଚାରିଜଣ ବ୍ରାହ୍ମଣଙ୍କ ଆଗରେ ଗରୁଡ଼ସ୍ତମ୍ଭ ଚନ୍ଦନ ଅର୍ଗଳୀ ଓ ଜଗନ୍ନାଥଙ୍କ ମୁଖାରବିନ୍ଦର ବର୍ଣ୍ଣନା କରି ବସିଲା। ଆପଣା ଦେଶର ଜଗନ୍ନାଥ ଓ ପୁରୀର ମୂର୍ତ୍ତି ମଧ୍ୟରେ କି ପାର୍ଥକ୍ୟ ତାହା ବର୍ଣ୍ଣନା କରି ବସିଲା। ବ୍ରାହ୍ମଣମାନେ ତାହା ଶୁଣି ପ୍ରଥମେ ଅସମ୍ଭବ ବୋଲି ମନେ କଲେ। କିଏ କିଏ କହିଲେ। ଯେଉଁ କଥା ତୁ କହୁଅଛୁ ଭିତରକୁ ଧୋବା ପ୍ରବେଶ କରିବା ଅସମ୍ଭବ। ଧୁନ୍ଦିଆ କହିଲା ମତେ ଜଗନ୍ନାଥଙ୍କ ଡୋରୀ ଲାଗିଲା। ଏଠାରୁ ଗଲି। ଜଗନ୍ନାଥ ଦର୍ଶନ ଦେବାକୁ ଡୋରୀ ଲଗାଇଲେ। ତାଙ୍କର ଶ୍ରୀମୁଖ ଦର୍ଶନ ପାଇଁ ଅର୍ଥ ବ୍ୟୟ କଲି ଏତେ ବାଟ ଚାଲିଲି ସେଠାକୁ ଯାଇ ଦେଖିଲି ଯେ ପୁରୀରେ ଜାତି ବିଚାରର ବେଶି ଧରାବନ୍ଧା ନାହିଁ। ଅରୁଣ ସ୍ତମ୍ଭ ନିକଟରେ ଠିଆହୋଇ ପତିତପାବନ ଚିତ୍ର ଦେଖି ମନ ମୋର ତୃପ୍ତ ହେଲା ନାହିଁ। ଭିତରକୁ ଯାଇ ଶ୍ରୀମୁଖ ଦେଖିବାର ଆଗ୍ରହ ବଳିଲା। କଳିହା ମିଛୁ ମିଶ୍ରେ ମୋର ସାଥି। ତାଙ୍କ ସଂଗରେ ଗଲେ ବା ତାଙ୍କ ସାହାଯ୍ୟ ଲୋଡ଼ିଲେ ସେ ଦ୍ୱନ୍ଦ୍ୱଉପସ୍ଥିତ କରାଇବେ। ମାତ୍ର ମରାଇବେ। ଜେଲ ଦିଆଇଲେ, ନାଁ ଅନ୍ୟ ଉପାୟ ଦେଖିବା ଭଲ। ଦିନେ ବଡ଼ ଦାଣ୍ଡରେ ବୁଲୁ ବୁଲୁ ଜଣେ ପଣ୍ଡା ମତେ ଦେଖି ପଚାରିଲେ ଜଗନ୍ନାଥ ଦର୍ଶନ ହେଲାଣି ? ମୁଁ କହିଲି ନା, ପୁଣି ସେ କହିଲେ ତୁମର ପଣ୍ଡା କିଏ ? ମୁଁ କହିଲି ଯେ ଶ୍ରୀମୁଖ ଦେଖାଇଲା ସେହି ମୋର ପଣ୍ଡା।

ସେ ମୋତେ ସଂଗରେ ନେଇ ଗଲେ ମୋର ଜାତି ସମ୍ବନ୍ଧରେ କିଛି ପଚାରିଲେ ନାହିଁ। ମୁଁ ନିର୍ବିକଳ୍ପ ଚିତ୍ତରେ ଚାଲିଗଲି। ତାଙ୍କୁ ଉତ୍ତମ ଦକ୍ଷିଣା ଦେଲି। ଜଣେ ବ୍ରାହ୍ମଣ କହିଲେ ତୁ ଧୋବା ତୋର ଏଡ଼େ ଗର୍ବ ତୁ ମନ୍ଦିର ଭିତରେ ପଶି ପ୍ରଭୁଙ୍କୁ ଅପ୍ରତିଷ୍ଠା କଲୁ ?

ମୁଁ କହିଲି ପ୍ରଭୁ ଅପ୍ରତିଷ୍ଠା ହୋଇ ନାହାନ୍ତି। ହୋଇଥିଲେ ନିଶ୍ଚୟ ଜଣା ପଡ଼ିଥାନ୍ତା। ମୋର ଦଣ୍ଡ ହୋଇଥାନ୍ତା। ପ୍ରଭୁ ଆଗରେ ତୁମେ ଯେମିତି ମୁଁ ମଧ ଜଣେ ସେହିପରି। ଏଠାରେ ତୁମେ ବ୍ରାହ୍ମଣ ମୁଁ ଧୋବା

ତୋ ମୁଣ୍ଡରେ ବଜ୍ରବାଡ଼ି ପଡୁ। ତୋର ଭାରି ଗର୍ବ ହେଲାଣି।

ନାନା ଠିକ୍ ଏହି କଥା ଦିନେ ମିଛୁ ମିଶ୍ରେ କହିଥିଲେ। ଆଜି ତୁମେ ମଧ କହୁଛ। ମରଣ ତ ଅବଶ୍ୟ ଆସିବ। ସେଥିରେ ଚିନ୍ତା କଣ ?

ସୁ-ଚିକିତ୍ସା ଦ୍ୱାରା ପ୍ରାୟ ତିନି ସପ୍ତାହ ପରେ ମିଛୁ ମିଶ୍ରେ ସଂପୂର୍ଣ୍ଣ ଆରୋଗ୍ୟ ହେଲେ। ଗତ କଥାମାନ ତାଙ୍କର ମନରେ ପଡ଼ିଲା। ଧୁନ୍ଦିଆର ସେବା ଶୁଶ୍ରୂଷା, ତାର ଜଳପାନ, ତାର ଅନ୍ନ ଭକ୍ଷଣ। ଧୋବାର ଜଳ, ଧୋବାର ଅନ୍ନ, ଶ୍ରୋତ୍ରୀୟ ବ୍ରାହ୍ମଣ ପକ୍ଷରେ ବି ଗର୍ହିତ କାର୍ଯ୍ୟ। ଜାତି ନାଶ ଧର୍ମ ନାଶ-ଜଗନ୍ନାଥ ଦର୍ଶନର ଏହି ଫଳ। ଅହୋ....।

ଚଣ୍ଡାଳ ପ୍ରଥମେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କଲା। ପରେ ବ୍ରାହ୍ମଣଙ୍କୁ ମଧ ଅପ୍ରତିଷ୍ଠା କଲା। ତା ମୁଣ୍ଡରେ ବଜ୍ର ପଡ଼ିଲା ନାହିଁ। ତାଙ୍କୁ ଡାକୁଣୀ ସ୍ପର୍ଶ କଲା ନାହିଁ। ମଡ଼କ ଧରିଲା ମୋତେ। ଯେବେ ନିର୍ବିଘ୍ନରେ ପହୁଞ୍ଚିଥାଏ। ତେବେ କିଏ କଥା କହିବାକୁ ପରାଙ୍ମୁଖ ହୋଇଥିବି ? ମୁଁ ମଧ ଅହଂ ଦେଖାଇବି କିପରି ? ଧୁନ୍ଦିଆ ମଲା ନାହିଁ କିଆଁ ? ନିଶ୍ଚିନ୍ତ ମରିଥିବ ଏ ଅଧର୍ମ କେହି କେବେ କହିବ ନାହିଁ।

ମିଛୁ ମିଶ୍ରେ ଧୁନ୍ଦିଆର ମହତ୍ତ୍ୱ ଓ ଉପକାରିତାକୁ ସୁମରି କେବଳ ଈର୍ଷ୍ୟାରେ ପ୍ରଜ୍ୱଳିତ ହେବାକୁ ଲାଗିଲେ। ଡାକ୍ତରଖାନାରୁ ବାହାରି କିଛିଦିନ ଭିକ୍ଷାର୍ଜନ କଲେ। ବ୍ରାହ୍ମଣ ସମାଜରୁ ଡାକ୍ତରଖାନାରେ ରହିଥିବା ହେତୁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କଲେ। ଧୁନ୍ଦିଆ ଅନ୍ନ ଜଳ କଥା ଗୋପନ କଲେ। ବ୍ୟବସ୍ଥା ଅନୁସାରେ ହଟକେଶ୍ୱର ମନ୍ଦିରରେ କିଛିଦିନ ଜପ କରି ଶୁଦ୍ଧି ଲାଭକଲେ ଗୃହକୁ ପ୍ରତ୍ୟାବୃତ୍ତ ହେଲେ ଗ୍ରାମରେ ପ୍ରକ୍ଷରେ ଗ୍ରାମରେ ଧୁଳିଆ ତାଙ୍କ କଥା କିଛି କହି ନାହିଁ ଏହା ଯେ ବିଶ୍ୱାସ କଲେ। ତଥାପି ଧୁନ୍ଦିଆ ତାଙ୍କର ଚକ୍ଷୁଶୂଳ ହୋଇ ରହିଲା। ଯେହେତୁ ସେ ବ୍ରାହ୍ମଣର ଉପକାର କରି ମୃତ୍ୟୁମୁଖରେ ପଡ଼ିଲା ନାହିଁ। ଧୁନ୍ଦିଆ ଔଷଧ ବିତରଣ ଦ୍ୱାରା ପରେପକାରରେ ଲାଗିଛି। ମିଛୁ ମିଶ୍ରଙ୍କର ଅପକର୍ମକଥା ସେ ବିସ୍ମୃତି ବୋଇଲେ ଚଳେ। କିନ୍ତୁ ମିଛୁ ମିଶ୍ରେ ପ୍ରତ୍ୟହ ଦେବତାଠାରେ ଧୁନ୍ଦିଆର ମୃତ୍ୟୁ କାମନା କରି ଚାଲିଛନ୍ତି। ସେ ଜୀବିତ ଥିବାଯାଏ

ତାଙ୍କର ଶାନ୍ତି ନାହିଁ। ତାଙ୍କ ଜୀବନର କଳଙ୍କ ରଖି ଜଣେ ଲୋକ ଏ ସଂସାରରେ ତାଙ୍କ ଆଗରେ ବାଟ ଚାଲୁଥିବ କାହିଁକି ? ଉପକୃତ ବ୍ୟକ୍ତି ଉପକାରରେ ମୃତ୍ୟୁକାମନା କରେ। ସେ ଭାବେ ଯେ ଉପକାରୀ ବ୍ୟକ୍ତି ଜୀବିତ ଥିବାଯାଏ ତାର ଟେକିବାର ଉପାୟ ନାହିଁ। ଧନ୍ୟ ସଂସାର।

ମିଛୁ ମିଶ୍ରେଙ୍କର ଭର୍ତ୍ସନା ଅଭିଶାପ ଧୁନ୍ଦିଆ ଅମ୍ଳାନ ବଦନରେ ମଧ କରିପାରି ଅଛି। ଭ୍ରୂକ୍ଷେପ କରିବାହିଁ କେବେହେଲେ ତା ଉପକାର ରୂପ ରହସ୍ୟଟି ହୃଦୟରେ ନିଭୃତ ସ୍ଥାନରୁ ବାହାରକରି ନାହିଁ। ବର୍ଷ କେତେ ଚାଲିଗଲା। ବୃଦ୍ଧ ଧୁନ୍ଦିଆ ଆପଣା କର୍ତ୍ତବ୍ୟ ପଥରୁଢ଼ ହୋଇ ନାହିଁ। ଚୈତ୍ରମାସ, ଧୁନ୍ଦିଆ ଜ୍ୱର ପୀଡ଼ିତ ହେଲା। ବିକାର ଜ୍ୱର ବଞ୍ଚିବାର ଆଶା କମ୍। ଗ୍ରାମବାସୀ ପ୍ରାୟ ସମସ୍ତେ ଧୁନ୍ଦିଆକୁ ଦେଖିବା ନିମନ୍ତେ ଆସୁଥାନ୍ତି। ତାର ଅଶୁଭ ସୂଚନା ପାଇଁ ସମସ୍ତେ ବିବ୍ରତ। ଆହା ବଡ଼ ପରଉପକାରୀ, ବଡ଼ ଉଦାଶୟ, ପ୍ରକୃତିବାଦୀ। ବିଚରା ବଞ୍ଚିବକି ନାହିଁ ସନ୍ଦେହ। ଆବାଳ ବୃଦ୍ଧ ବନିତାଙ୍କ ମୁଖରେ କେବଳ ସେହି କଥା। ଅଳ୍ପଦିନ ମଧରେ ଧୁଲିଆ ମୃତ୍ୟୁ ଶଯ୍ୟାରେ ଶୋଇ ରହିଲା। ମୃତ୍ୟୁର ପୂର୍ବ କାଳରୁ ଭାବିଲା ଜଣେ ଲୋକର ଅପମାନଜନକ କଥାକୁ ଗୋପନ ରଖିବାକୁ ଶପଥ କରିଥିଲି। ତାହା ମୋର ହୃଦୟର ନିଭୃତ ସ୍ଥାନରେ ଧରିଯାଉଛି। ମୋର ପ୍ରତିଜ୍ଞା ରହିଲା। ଏଥିବଳି ଆନନ୍ଦର କଥା ଆଉ କଣ ଏ ସଂସାରରେ ? ଭାବିଲା ଟିକିଏ ହସିଲା, ଅନ୍ତିମ ସମୟରେ ଚକ୍ଷୁ ମୁଦ୍ରିତ ହେଲା। ଅନେକ ଲୋକଙ୍କର ଅଯାଚିତ ସ୍ନେହ ସହାନୁଭୂତି ନେଇ ଧୁନ୍ଦିଆ ଚାଲିଗଲା। ମିଛୁ ମିଶ୍ରଙ୍କର ଈର୍ଷ୍ୟାନଳର ତାପ କିଞ୍ଚିତ ଉପଶମ ହେଲା ସେ ଭାବୁଥିଲେ ଧୁଲିଆ ମଲା ପାପ ଗଲା।



*('ଉତ୍କଳ ସାହିତ୍ୟ' ମାସିକ ପତ୍ରିକା ୧୯୨୯ ସାଲରେ ପ୍ରକାଶିତ)*

# ମସ୍ତରାମର ମୁକ୍ତି

ମସ୍ତରାମ ଜଣେ ସାଧୁ। ଜନ୍ମସ୍ଥାନ କାଶ୍ମୀର। ଅଳ୍ପ ବୟସରୁ ସେ ଗୃହତ୍ୟାଗୀ। ସାଧୁ ସନ୍ନ୍ୟାସୀ ମାନଙ୍କ ସହିତ ଅନେକ ତୀର୍ଥ ପର୍ଯ୍ୟଟନ କରିଥିଲା। ବିଦ୍ୱାନ ବା ଶାସ୍ତ୍ରଜ୍ଞ ନଥିଲା ସେ। ଅନେକ ସାଧୁ ସଜ୍ଜନଙ୍କ ସଙ୍ଗରୁ ଯେ ଜ୍ଞାନ ମିଳିବା ସମ୍ଭବ। ତାହା ସେ ପ୍ରାପ୍ତ ହୋଇଥିଲା। ତାକୁ ଗୀତ ଶ୍ଳୋକ ଭଜନ ଅନେକ ଜଣା। ତୁଳସୀ ଦାଶ, ନାନକ, କବିର, ମିରାବାଈ ପ୍ରଭୃତି ନାନା ସଂପ୍ରଦାୟର ଭକ୍ତମାନଙ୍କ ଭଜନମାନ ଆବୃତ୍ତି କରି ସୁଖାନୁଭବ କରେ। ଏ ଭକ୍ତ କି ରାମ ରହିମନ ଯୁଦା କରୋଜି, ଦିଲକୁ ସଚ୍ଚା ରଖୋଜି, ଭଜନଟି ପ୍ରାୟ ପ୍ରତ୍ୟହ ଉଚ୍ଚାରଣ କରେ। କେହି କେହି ଏହାଶୁଣି ତାର ଧର୍ମ ମନର ସମାଲୋଚନା କରିବାକୁ ବସିଲେ। ମସ୍ତରାମ ପ୍ରକାଶ କରେ ଯେ ସେ ବିଦ୍ୱାନ ନୁହେଁ, ଯେ କେ କରି ନିଜ ମତ ସମର୍ଥନ କରିବାକୁ ଚେଷ୍ଟା କରିବ। ସେ ଭକ୍ତ, ମୌଜା ଅନୁସାରେ ଯେଉଁ ଭଜନ ଯେବେ ବେଳେ ସ୍ମରଣ ହୁଏ। ତାହା ଆବୃତ୍ତି କରି ସୁଖାନୁଭବ କରେ, ଏଥିରେ ତାର ଆନନ୍ଦ ଏ ଉତ୍ତରରେ ତାର୍କିକର ଯୁକ୍ତି ନିରସ୍ତ।

ମସ୍ତରାମ ଚରିତ୍ରବାନ୍। ସାଧାରଣ ସାଧୁ, ସନ୍ନ୍ୟାସୀଙ୍କ ପରି ଲୋଭୀ ଓ ଅର୍ଥଗୃଧ୍ନ ନଥିଲା। ଧର୍ମ ଧ୍ୱଜୀ ନଥିଲା। ନମ୍ର ବାକ୍ୟାଳାପ ଦ୍ୱାରା ସମସ୍ତଙ୍କୁ ଆପ୍ୟାୟିତ କରିବାକୁ ସଦାଚେଷ୍ଟିତ ସେ।

ମସ୍ତରାମ ଗୋଟିଏ ଖଟୁଲି ଥିଲା। ସେଥିରେ ଗୋଟିଏ ଶାଳଗ୍ରାମ, ଗୋଟିଏ ବାଣଲିଂଗ, ଗୋଟିଏ ପିତ୍ତଳ ନିର୍ମିତ ଗୁରୁଣ୍ଡୁକୋପାଳ, ତିନିଗୋଟି ଚିନାମାଟିର ପିତୁଳା।

ଏ ଗୁଡ଼ିକ ତାର ପରମ ଦେବତା, ଏମାନଙ୍କର ବେଶଭୂଷା ନିମନ୍ତେ ମସ୍ତରାମର ପ୍ରତ୍ୟହ ଏକ ଘଣ୍ଟା କାଳ ଅତିବାହିତ ହୁଏ। ଫୁଲ ପତ୍ର ଦ୍ୱାରା ଦେବତାମାନଙ୍କୁ ଏବଂ ଖଟୁଲିକୁ ଏପରି ସୁନ୍ଦର କରି ସଜ୍ଜିତ କରେ ଯେ ଲୋକେ ଦେଖି ତାକୁ ଧନ୍ୟବାଦ ଦିଅନ୍ତି। ବେଶ କଲାବେଳେ ପିଲାମାନେ ନିକଟରେ ବସି ଦେଖନ୍ତି। ବଡ଼ ଆମୋଦ ଅନୁଭବ କରନ୍ତି। ମସ୍ତରାମ ଠାକୁ କୌଣସି କୌଣସି ପିଲା

ନାନା ସ୍ଥାନରୁ ଭଲ ଭଲ ଫୁଲ ତୁଳସୀ ସଂଗ୍ରହ କରି ଆଣି ଦିଅନ୍ତି। ମସ୍ତରାମ ଭାରି ଆନନ୍ଦରେ ତାହା ଗ୍ରହଣ କରି ଶୁଭାଶୀର୍ବାଦ ଦିଏ। ବେଶଭୂଷା ସରିବାରୁ ମସ୍ତରାମ ଆପଣା ଆସନରେ ବସିପଡ଼େ ବାଳକମାନେ ଏକ ଲୟରେ ଖଟୁଲୀ ଆଡ଼କୁ ଅନାଇ ରହନ୍ତି। ମସ୍ତରାମ ଆପଣା ଆସ୍ଥାନରେ ଥରେ ଦେବତା ଆଡ଼କୁ ଥରେ ବାଳକମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରି ଆହ୍ଲାଦିତ ହୁଏ। ସୁଖାନୁଭବ କରେ।

ମସ୍ତରାମ ଦେବତାଙ୍କୁ ଯଞ୍ଚୋପଚାର ବା ଷୋଡ଼ଶୋପଚାରରେ ଯେ ପୂଜା କରେ ତାହା ନୁହେଁ, ସମ୍ମୁଖରେ ଗୁଡ଼ କଦଳୀ ଉଖୁଡ଼ା ଚିନି ଫଳ ଯାହା ଯେଉଁଦିନ ମିଳିଲା ତାହା ରଖିଦିଏ। କିଛିକ୍ଷଣ ଗଲା ଉତ୍ତାରୁ ବାଳକମାନଙ୍କୁ ଭୋଗତକ ବିତରଣ କରିଦିଏ। ବୋଧହୁଏ ମସ୍ତରାମକୁ ଶାସ୍ତ୍ରୋକ୍ତ ପୂଜାବିଧି ଜଣାନଥିଲା। ତାହା ଶିଖିବାକୁ ମଧ୍ୟ ସେ କେବେ ଚେଷ୍ଟା କରିନି। ବେଶ ମୌଜରେ ମସ୍ତରାମର ଦିନ କଟିଯାଏ।

ମସ୍ତରାମ ମନେକରେ ତାର ଦେବତାମାନେ ରାତ୍ରରେ କଥାବାର୍ତ୍ତା ଚଳାନ୍ତି। ଖେଳା କରନ୍ତି, ହସନ୍ତି, ଆମୋଦ ପ୍ରମୋଦ କରନ୍ତି। ଏକଥା କାହାରି କାହାରିକୁ କହେ। କହନ୍ତେ ଏକଥା ଶୁଣିଲାଲୋକ ମସ୍ତରାମକୁ ବିକୃତ ମସ୍ତିଷ୍କ ବୋଲି ମନେ କରନ୍ତି। ଖଟୁଲିରେ ଚିନାମାଟିର ପିତୁଳା ଦେଖି କେହି କେହି ନାସିକା କୁଞ୍ଚିତ କଲେ ମସ୍ତରାମ କହେ ଯେବେ ଖଟୁଲୀରେ ବସି ପୂଜା ପାଇଲେ ପିତ୍ତଳ ପ୍ରତିମା ଜୀବନ ପାଆନ୍ତି। ତେବେ ଚିନା ପିତୁଳାମାନେ ଜୀବନ ପାଇବେ ନାହିଁ କାହିଁକି ? ଏକଥାଟି ମନୁଷ୍ୟ ସଙ୍ଗରେ ଅନ୍ୟଜାତିର ମନୁଷ୍ୟର ଯେଉଁ ପରି ସମ୍ବନ୍ଧ। ସେହିପରି ଭିନ୍ନ ଭିନ୍ନ ସଂପ୍ରଦାୟ ପିଲାମାନଙ୍କ ମଧ୍ୟରେ ସମ୍ବନ୍ଧ ରକ୍ଷା ହୁଏ କି ନାହିଁ। ତାହା ଦେଖିବାର ତାର ଇଚ୍ଛା। ଏ ଅଦ୍ଭୁତ କଳ୍ପନାର କୌଣସି ପ୍ରତିବାଦ କରିବା ଅସମ୍ଭବ।

ମସ୍ତରାମ ପୂଜାପଦ୍ଧତି ମନ୍ତ୍ର ସ୍ତୁତି ଭଜନ ସବୁ ହିନ୍ଦୁ ଶାସ୍ତ୍ରର ଓଲଟା, ଅଥଚ ସେ, ପୌତ୍ତଳିକ ଭକ୍ତ। "ମନନ ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧ ମୋକ୍ଷୟୋଃ।

ଗ୍ରାମବାସୀଙ୍କ ସହିତ ମସ୍ତରାମର ପ୍ରୀତି ସଦ୍‌ଭାବ ରଖି ଅନେକ ଦିନ ଅତିବାହିତ କଲା। ଚୈତ୍ରମାସ, ଦିନେ ପ୍ରତ୍ୟୁଷରୁ ପାତ୍ରୋଥାନ କରି ସ୍ନାନାଦି ଶେଷକରି ଆପଣା ଲୁଗାପଟା ବାନ୍ଧି ମସ୍ତରାମ ସ୍ଥାନ ତ୍ୟାଗ କରିବାକୁ ଉଦ୍ୟତ। କେବଳ ତାର ଅନ୍ତରଙ୍ଗବନ୍ଧୁ ଓ ସାହାଯ୍ୟ ବର୍ଗର ଅପେକ୍ଷା କରୁଥାଏ। ବଂଧୁ ଆସି ଉପସ୍ଥିତ। ମସ୍ତରାମ କହିଲେ.....

ବାବା ଆଜି ଏ ସ୍ଥାନ ତ୍ୟାଗ କରିବାକୁ ବାଧ୍ୟ ହେଲି। ହଠାତ୍ ଏଥିର କାରଣ କଣ ? ପୂର୍ବରୁ ଏଥିରେ କୌଣସି ପ୍ରସ୍ତାବ ନଥିଲା। ହଠାତ୍ କୌଣସି ଅପମାନ ପାଇଲ ନା ଅସୁବିଧା ଦେଖିଲ କିଛି। ରାତ୍ର ମଧ୍ୟରେ ଏ ଅଦ୍ଭୁତ ଇଚ୍ଛା ମନ ମଧ୍ୟରେ ଜାଗରୁକ ହେଲା କିପରି। ମାଲ୍‌ଯାକ ଛନ୍ଦାବନ୍ଧା କରି ଚାଲିଯିବାକୁ ପ୍ରସ୍ତୁତ। ଯେବେ ନିଶ୍ଚୟ ଯିବ। ତେବେ ମତେ ଏଥିର କାରଣ କହିବାକୁ କିଛି ଆପତ୍ତି ଅଛି କି ?

ନା ବାବା ମୋର ଯିବାର କାରଣ ତୁମକୁ କହିବାକୁ ବାକିରହିଛି। ତୁମକୁ ସବୁକଥା କହିବି ଏବଂ ମୋର ବାଳକ ସଖାଙ୍କୁ ଆଶୀର୍ବାଦ ଦେଇ ଚାଲିଯିବି।

ଶୁଣ ମୁଁ ତୁମକୁ ଅନେକ ଥର କହିଛି ଯେ ମୋ ଖଟୁଲୀରେ ଦେବତାମାନେ କଥାବାର୍ତ୍ତା ହୁଅନ୍ତି।

କହୁଛ ସତ ମାତ୍ର ତାହା ତୁମର ମନର ଭ୍ରମ। ଯୁକ୍ତି ଦ୍ୱାରା ଭକ୍ତିର ସମର୍ଥନ କରିବାର ମୋର ଲକ୍ଷଣ ନାହିଁ। ମୋର ବିଶ୍ୱାସ ଅନୁସାରେ କହିଥାଏଁ।

ତେବେ କହ...।

ଆଜି ରାତି ପ୍ରାୟ ତିନିଟା ବେଳେ ମୋ ମୁଣ୍ଡଆଢ଼େ କିଏ ଠିଆ ହୋଇ ଡାକିଲା ଏ...ଏ.. ମସ୍ତରାମ, ମସ୍ତରାମ, ମସ୍ତରାମ।

କିଏ..... ?

ମୁଁ ନାରାୟଣ ଠାକୁର, ମୁଁ ତୋ ଖଟୁଲୀରେ ଅଛି।

ମୋ ଖଟୁଲୀରେ ତ ନାରାୟଣ ଠାକୁର ନାହାନ୍ତି।

ହଁ, ମୁଁ ତୋର ଶାଳଗ୍ରାମ। ବଙ୍ଗ ଦେଶରେ ମୋତେ ନାରାୟଣ ଠାକୁର ବୋଲି କହନ୍ତି।

କ'ଣ ହେଲା ?

ପ୍ରଥମରୁ ତୁ ମୋତେ ଭୁଟାନ ଦେଶରୁ ଆଣିଲୁ। ବଙ୍ଗଦେଶରୁ ଗୋଟିଏ ବାଳଗୋପାଳ ସଂଗ୍ରହ କଲୁ। ପୁଣି ଗୋଟିଏ ବାଣ ଲିଙ୍ଗ ସଂଗ୍ରହ କଲୁ। ଏଥିରେ ତୋର ମନତୃପ୍ତ ହେଲାନାହିଁ, ତିନୋଟି ଚିନାମାଟିର ପ୍ରତିମା ସଂଗ୍ରହ କଲୁ। ଏଠାରେ

ଗୋଟିଏ ଉତ୍ତମ ଖଟୁଲୀ ନିର୍ମାଣ କରି ଛ'ଗୋଟି ପ୍ରତିମାଙ୍କୁ ଏକତ୍ର ରଖି ପୂଜା କରୁଛୁ।

କ'ଣ ହେଲା ପୂଜାରେ କି ମୁଁ ତୃଟି କରିଛି ?

ନାଁ ମୁଁ ତାହା କରୁନି। ତତେ ପରା ଆଉଦିନେ କହିଥିଲି ଯେ ଚିନା ପିତୁଳାମାନେ ରାତ୍ରରେ ମେଳା କରନ୍ତି।

କହିଥିଲ, ଭଲ କଥା, ସେମାନେ ଖେଳିଲେ ବୁଲିଲେ ସେଥିରେ କ୍ଷତି କ'ଣ ?

ତୁ ବୁଝିଲୁ ନାହିଁ। ସେଥିରେ ଆମ୍ଭମାନଙ୍କୁ କଷ୍ଟ ହେଲା।

ତୁମର କଷ୍ଟ କାହିଁକି ! ତୁମେ ତୁନି ହୋଇ ଥାଅ ?

ଚୁପ୍ ହୋଇ ରହିବାର କି ଗତି ଅଛି। ସେମାନେ ମତେ ଗୋଟିଏ ସୁନ୍ଦର ଗୋଲ ପଥର ପାଇ ପ୍ରତିରାତ୍ରିରେ ଗଡ଼ାଇ ଗଡ଼ାଇ ଖେଳନ୍ତି। ମୋର କଥା କହିବାର ଯୁ କାହିଁ। ସେମାନେ ମୋତେ ନାରାୟଣ ବୋଲି ମନେ କରିବେ ନାହିଁ କି ବିଶ୍ୱାସ କରିବେ ନାହିଁ। ଭୂତ ବୋଲି ବିଶ୍ୱାସ କରି ହୁଏତ ପ୍ରହାର କରିବେ। ବା କେଉଁଆଡ଼େ ଫିଙ୍ଗିଦେବେ। ଏ ଭୟରେ କଥା କହିବାକୁ ସାହସ ହୁଏ ନାହିଁ।

ବାଣ ଲିଙ୍ଗଟି ସଫେଦ ଫୁଲ ଭିତରେ ଲୁଚି ରହିଥାଏ। ବାହାରକୁ ଦେଖାଯାଏ ନାହିଁ। ସେମାନେ ତାଙ୍କୁ ଦେଖି ପାରନ୍ତି ନାହିଁ। ନୋହିଲେ ଡିମ୍ବ ବୋଲି ଭାଙ୍ଗି ପକାନ୍ତେଣି।

ମୁଁ ଦିନେ ବାଳ ଗୋପାଳକୁ କହିଲି, ତୁମେ ତ ମୂର୍ତ୍ତି ସେମାନଙ୍କ ସହିତ ସମକକ୍ଷ ହୋଇ ଖେଳ ଏବଂ ମୋ ପ୍ରତି ଅତ୍ୟାଚାର କରିବାକୁ ଅନୁରୋଧ କର। ସେ କହିଲେ କିହୋ ମୁଁ ତ ପିଲା ମୂର୍ତ୍ତିଟିଏ। ମୁଁ ତାଙ୍କ ସହିତ ସମକକ୍ଷ କିପରି। ମୁଁ ଗୁରୁଣ୍ଡି ଗୁରୁଣ୍ଡି ଚାଲିଲାବେଳେ ମୋ ପିଠି ଉପରେ ଚଢ଼ିବେ। ହାତୀ ଘୋଡ଼ା ପରି ବ୍ୟବହାର କରିବେ। ମୁଁ ଖେଳିବି ନାହି ବା ପାଟି ତୁଣ୍ଡ ଫିଟାଇବି ନାହିଁ। ନିଜେ ବାଳଗୋପାଳର ବାମ ହାତରେ ଖଣ୍ଡେ ଦଉଡ଼ି ବାନ୍ଧି ଘୋଷାଡ଼ି ଘୋଷାଡ଼ି ଖୋଲି ସେ ବାକ୍ୟ ବ୍ୟୟ କଲେ ନାହିଁ।

ଆମେ ଦୁହେଁ ବିଚାରିଲୁ ମସ୍ତରାମ ତ ଏ ଅନିଷ୍ଟ କରାଉଛି, ଆମ ଅନୁରୋଧ ତ ରକ୍ଷା କଲାନାହିଁ। ଯେତେ ଦିନ ପାରେ ସହିବା "ଧାତୁ" ପଥର ଓ ସହନଶୀଳ, ନାହିଁ ଆମର ଗୁଣ।

ମସ୍ତରାମ ଅନେକ ସହିଲୁ, ତୁ ପ୍ରତିକାର ନକଲେ ଆଉରି ଅଛି ସହିବାକୁ, ହଉ ତୋ ଇଚ୍ଛା।

ତୁମର ଇଚ୍ଛା କଣ ?

ବାବା ତୁ ମତେ ଭୁଟାନରୁ ଆଣିଥିଲୁ। ସେହିଠାରେ ନେଇ ମତେ ଛାଡ଼ିଆ।

ମୋର ସେବା ପୂଜା କି ତୁମକୁ ସୁଖକର ହେଲାନାହିଁ। ଭୁଟାନ ଦେଶରେ ନଦୀରେ ପଡ଼ିରହିବାଟା ଭଲ ମନେ କଲ।

ହିମାଳୟରେ ମୋର ଜନ୍ମ, ତୁଷାର ନଦୀ ମୋତେ ଗଢ଼ିଛି ସେଠାରେ ମୋର ଜାତି ଭାଇଙ୍କ ସହିତ ମାତୃ କୋଡ଼ରେ ମାତୃ ଭୂମିରେ ରହିବି। ଏଥିରୁ ବଳି ଆଉ ସୁଖ କ'ଣ ଥାଇପାରେ। ତୋର ଫୁଲ ଅପେକ୍ଷା ନଦୀର ପଥର ଓ ଜଳର ଛେଉକୁଟା ମୋ ପ୍ରତି ସୁଖକର। ମୋତେ ନେଇ ଛାଡ଼ିଆ। ଆଦରରେ ଆଣିଥିଲୁ। ଆଦରରେ ନେଇ ଛାଡ଼ିଆ ଅନ୍ୟର ହସ୍ତରେ ଦେ ନାହିଁ।

ଅନ୍ୟ ଦେବତାଙ୍କ ସମ୍ବନ୍ଧରେ ତୁମର କି ଉପଦେଶ। ସେମାନଙ୍କୁ କି ତୁମ ସଙ୍ଗରେ ଭୁଟାନକୁ ନେଇଯିବି।

ନା ନା ତା କେବେ କର ନାହିଁ। ମୋତେ କେବଳ ନେଇ ଛାଡ଼। ସେମାନଙ୍କ ସମ୍ବନ୍ଧରେ ତୋର ଯାହା ବିଚାର ତାହାହିଁ କର।

ମୋର ଏତେ ଆଦର ପ୍ରେମ ମମତା ଯତ୍ନ ସବୁ ତୁଚ୍ଛ କରି ଦେଇ ସ୍ୱସ୍ଥାନକୁ ଚାଲିଯିବାକୁ ଇଚ୍ଛାକଲ। ଆଚ୍ଛା ତୁମ ଅନୁରୋଧ କ୍ରମେ ତୁମକୁ ନେଇ ଛାଡ଼ି ଆସିବି। ମାତ୍ର ଅନ୍ୟମାନଙ୍କୁ ମୁଁ ରଖିବି। ପ୍ରତିମା ଗୁଡ଼ିଏ ରଖି ସେମାନଙ୍କର ସେବା ଯତ୍ନ କରିବାକୁ ମୋର ବଡ଼ ଇଚ୍ଛା। ମୁଁ ଏଥିରେ ବଡ଼ ସୁଖ ଅନୁଭବ କରେଁ। ତୁମ ସଙ୍ଗରେ ନେବି, ପୁଣି ଫେରାଇ ଆଣିବି। ନାନା ତାହା କରନା ମୁଁ ଅନୁରୋଧ କରୁଛି। ଏହାଛଡ଼ା ମୁଁ ଗୋଟିଏ ତଥ୍ୟ ଉପଦେଶ ଦେବି। ତୁ କଣ ଶୁଣିବୁ ଓ ମାନିବୁ ମସ୍ତରାମ ?

ହଁ, ନିଶ୍ଚୟ।

ତେବେ ଶୁଣ, ତୁ ଗୃହତ୍ୟାଗ କଲୁ କାହିଁକି ? ସଂସାର ବନ୍ଧନରୁ ମୁକ୍ତ ହୋଇ ନିମନ୍ତେ, ନୁହେଁକି ।

ହଁ,

ପିତା ମାତା ଭାଇ ବନ୍ଧୁ, ଧନ ସମ୍ପଦ ଛାଡ଼ିଲୁ । ମନେ କଲୁ ସଂସାରରୁ ମୁକ୍ତ ହେଲା । ସେମାନଙ୍କ ଚିନ୍ତାରୁ ରକ୍ଷା ପାଇଲୁ । କିଛି ଦିନ ଦେଶ ପର୍ଯ୍ୟଟନ କଲାଉତ୍ତାରୁ ଆଉ ଗୋଟିଏ ବନ୍ଧନରେ ପଡ଼ିଲ ।

କେଉଁ ବନ୍ଧନ ?

ତୋ ସଙ୍ଗୀମାନେ ଭୁଟାନ ଦେଶରେ ଶାଳଗ୍ରାମ ସଂଗ୍ରହ କଲାବେଳେ ଲୋଭମୁକ୍ତ ହେଲ । ମୋତେ ପାଇଲ । ମୁଁ ତୋ ବନ୍ଧନର ସୂତ୍ରପାତ । କ୍ରମେ ପାଞ୍ଚଗୋଟି ମୂର୍ତ୍ତି ସଂଗ୍ରହ କଲୁ । ସେମାନଙ୍କର ରକ୍ଷା ନିମନ୍ତେ ଗୋଟିଏ ଖଟୁଲୀ ନିର୍ମାଣ କରାଇଲ । ବା ଗୋଟିଏ ଗୃହ ନିର୍ମାଣ କରାଇଲ । ସେହି ଖଟୁଲୀ ରୂପକ ଗୃହ ମଣ୍ଡିବାକୁ କେତେ ଯତ୍ନ ଓ କେତେ ପରିଶ୍ରମ କଲ ଓ ପ୍ରତିଦିନ କରୁଛ । ସେମାନଙ୍କ ନିମନ୍ତେ ନାଲି ନୀଳ ରଙ୍ଗର ପାଟ କନା ସଂଗ୍ରହ କଲ । ମାଳ ମୁକୁଟ କିଣିଲ । ଯେମନ୍ତ ପୁତ୍ର କନ୍ୟା ନିମନ୍ତେ ଲୋକେ (ସଂସାରୀ) ଭଲ କପଡ଼ା ଭଲ ଅଳଙ୍କାର ଦେଖିଲେ ତାହା କ୍ରୟ କରିବାକୁ ଇଚ୍ଛା କରନ୍ତି । ତୁ ଆମ୍ଭମାନଙ୍କ ପାଇଁ କପଡ଼ା, ମାଳୀ, ଅଳଙ୍କାର କ୍ରୟ କରିବାକୁ ମାଗିବାକୁ ସର୍ବଦା ଯତ୍ନ କରୁଛୁ । ଓଳିଟାଏ ଏଣେତେଣେ ବୁଲି ଫୁଲ ସଂଗ୍ରହ କରୁଛୁ । ପ୍ରତ୍ୟହ ଚିନ୍ତା କରିବାକୁ ପଡୁଛି ଦିନେ କୌଣସି କାରଣରୁ ନିର୍ଦ୍ଦିଷ୍ଟ ସମୟରେ ସ୍ନାନ ନହେଲେ କେତେ ବ୍ୟାକୁଳ ହୋଇ କହୁ ଆହା ଆଜି ଏତେବେଳଯାଏ ମୋ ଦେବତା ଅଗାଧୁଆ ରହିଲେ । ଆଜି କିଛି ବାଳ ଭୋଗ ସଂଗ୍ରହ ହେଲା ନାହିଁ । ମୋ ଜୀବନକୁ ଧିକ୍ । ମୋ ଦେବତାମାନେ କଷ୍ଟ ପାଇଲେ, ଇତ୍ୟାଦି ଇତ୍ୟାଦି ।



*('ଉତ୍କଳ ସାହିତ୍ୟ' ମାସିକ ପତ୍ରିକା ୧୯୭୧ ସାଲରେ ପ୍ରକାଶିତ)*

# ବିବାହ ଭୋଜି

ଅନେକ ଶୀତକାଳରେ ସକାଳବେଳେ ଖରାକୁ ପିଠି ଦେଖାଇ ଘଣ୍ଟାଏ ଅଧେ ବସିବାକୁ ବଡ଼ ଭଲ ପାଆନ୍ତି। ମାର୍ଗଶିର ମାସ, ଭାରି ଶୀତ। ଆପଣା ଚୂନବେଦୀ ଉପରେ ଯୁବକ ଖରାକୁ ପିଠି ଦେଖାଇ ବସିଥିଲେ ଶାଲ ଖଣ୍ଡ ପିଠି ଉପରକୁ ଅଣ୍ଟାତଳକୁ ଖସି ପଡ଼ିଥିଲା। ଦକ୍ଷିଣ କର ଉପରେ ଗଣ୍ଡକୁ ରଖି ବକ୍ରଭାବରେ ବାମଜାନୁ ଉପରିସ୍ଥିତ ପୁସ୍ତକ ପାଠରେ ନିମଗ୍ନ ଥିଲେ। ଅନ୍ୟ ଆଡ଼େ ତାଙ୍କର ଆଦୌ ଲକ୍ଷ୍ୟ ନଥିଲା।

ଦକ୍ଷିଣ ପାଖରେ ଅଳ୍ପ ଦୂରରେ ଜଣେ ଯୁବତୀ ଆସି ନିଃଶବ୍ଦରେ ଦଣ୍ଡାୟମାନ ହେଲା। ପରିଧାନ ଖଣ୍ଡେ ନୂତନ ହଳଦିଆ ମୋଟ ଲୁଗା। ବର୍ଣ୍ଣ ଶ୍ୟାମ, ନାକରେ କୌଣସି ଅଳଙ୍କାର ନାହିଁ, ଦୁଇକାନରେ ଦୁଇଗୋଟି କଂସାର ତରପାତ୍। ଦୁଇ କାନର ଉପର ଅଂଶରୁ ଦୁଇଗୋଟା ବାଳୀଗୁଣାରୁ ଦୁଇ କେରା ରୁପାଶିକୁଳୀ କାନ ତଳଯାଏ ଓହଳିଥିଲା। ଅଳଙ୍କାର ମଧ୍ୟରେ ଏତିକି। ଗଳାରେ ଅନେକଗୁଡ଼ିଏ କାଚମାଳୀ, ମୁଣ୍ଡରେ ଓଢ଼ଣା ନାହିଁ। ମୁଣ୍ଡରେ ଗୋଟିଏ ଖୋଷା। ବିଶେଷ ପରିପାଟି ସହିତ କେଶବିନ୍ୟାସ କରି ନଥିଲା। ମାଙ୍ଗ ମଧ୍ୟରେ ଘୃତ କିମ୍ବା ତୈଳ ମିଶ୍ରିତ ଦୀର୍ଘ ସିନ୍ଦୁରର ଶିରା। ସିନ୍ଦୂର ଶିରାଟି ପ୍ରକୃତ ଗହ୍ୱରରସନା ତୁଲ୍ୟ, ଏଣୁ ଯୁବତୀର ମୁଖଶ୍ରୀକୁ ମ୍ଳାନ କରୁଥିଲା ବୋଲାଯିବ। ଏହି ଶିରାଟି ନ ଥିଲେ ତାର ପ୍ରକୃତ ଉଦ୍ଦାମ ଯୌବନସୁଲଭ, ପାର୍ବତୀୟ ରମଣୀର ପ୍ରାକୃତିକ ଶୋଭା ଫୁଟି ପଡୁଥାନ୍ତି। ବାଧ ହୋଇ ଶିରା କଟିଥିବାର ଅନୁମାନ ହେଉଥିଲା। ଶରୀର ହୃଷ୍ଟପୁଷ୍ଟ ଓ ସୁଗଠିତ। ଯୁବତୀ ନିଃଶବ୍ଦରେ କିଛିକ୍ଷଣ ରହିଲା। ବାବୁଙ୍କ ଧ୍ୟାନଭଙ୍ଗ କରିବାକୁ ତାର ଆଦୌ ଇଚ୍ଛା ନଥିଲା। ବାବୁ ମୁଖ ଟେକି ତାକୁ ପଚାରିବାଯାଏ ସେ ସ୍ଥିର ଭାବରେ ଅପେକ୍ଷା କରିବାକୁ ପ୍ରସ୍ତୁତ ହୋଇଥିଲା। ବାବୁ ପୁସ୍ତକର ପତ୍ର ଓଲଟାଇଲାବେଳେ ମୁଖ ଟେକି ତା ଆଡ଼କୁ ଅନାଇଲେ। ଯୁବତୀ ବେଦୀ କାନ୍ଥରେ ମୁଣ୍ଡ ଲଗାଇଲା, ଉଭୟଙ୍କ ମୁଖ ପ୍ରଫୁଲ୍ଲ ହେଲା। ବାବୁ ପଚାରିଲେ, "କିରେ କିଲିଙ୍ଗି, ଏତେ ଦିନରେ ଆସିଲୁ। ଭଲ ଅଛୁ ତ ?

"ହଁ ଦାଦା, ଭଲ ଅଛି।"

"ଆଜି ସକାଳୁ କେଉଁଆଡ଼େ ରେ।"

"ତତେ ଡାକିବାକୁ ଆସିଛି।"

"ମତେ କାହିଁକି ?"

"କିବିବାହଭୋଜି ଖାଇବା ନିମନ୍ତେ।"

"କାହାର ବିବାହ ଭୋଜି ?"

"ନ ଜାଣିଲା ପରି ପଚାରୁଛ।"

"ମୁଁ କିପରି ଜାଣିଲି, ମତେ କିଏ କହିଥିଲା କି ?"

"କେହି କହି ନାହିଁ, ତେବେ ଦେଖି କରି କଣ ଜାଣି ପାରୁ ନାହଁ ?"

ଯୁବକ ଅବଶ୍ୟ ଜାଣି ପାରୁଥିଲେ ଯେ, ବିବାହ କିଲିଙ୍ଗିର। ତାର ବେଶ ତହିଁର ପରିଚୟ ଦେଉଥିଲା। କୋହ୍ଲ ରମଣୀ ଜୀବନରେ ଦିନେ ମାତ୍ର ସିନ୍ଦୂର ଲଗାଏ, ତାହା ବିବାହର ପୂର୍ବେ। ତାହା ପୋଛାଯାଏ ନାହିଁ। ଯେତେଦିନ ରହିପାରେ ମସ୍ତକରେ ଥାଏ। ସିନ୍ଦୂର, ହଳଦିଆ ଲୁଗା ବିବାହର ପରିଚାୟକ। ଯୁବକ କହିଲେ, "ତୋର ବିବାହ, କିଲିଙ୍ଗି ?"

"ହଁ।"

"କେବେ ବିବାହ ହେଲା ?"

"ପାଞ୍ଚ ଦିନ ହେଲା।"

"ମୋତେ କାହିଁକି ଡାକି ଆସିଲୁ ?"

"ଭୋଜି ଖାଇବାକୁ।"

"କାହିଁକି ?"

"ବଡ଼-ଲୋକମାନେ କଥା ମନରେ ରଖ ନାହିଁ, ପାସୋରି ଦିଅ। ଆମେ କଣ ତାହା ପାସୋରି ପାରୁଁ ? ଗଲା ଖରା କାଳରେ ପରା ତୁ ଆମ ଗାଁକୁ ଯାଇଥିଲୁ।

ଫେରିଲାବେଳେ ମୁଁ ପଚାରିଲି, ଦାଦା, ପୁଣି କେବେ ଆସିବୁ ? ତୁ କହିଥିଲୁ, ତୋର ବିବାହକୁ ଡାକିବୁ ମୁଁ ଭୋଜି ଖାଇବାକୁ ଆସିବି। ଏଣୁ ମୁଁ ଡାକିବାକୁ ଆସିଛି।"

"ବିବାହ ସରିଲା, ଆଉ କି ଭୋଜି ?"

"ଦେଖ ଦାଦାର କଥା, ବିବାହ ସରିଲେ ସିନା ଭୋଜି, ଆଗରୁ କିଏ ଭୋଜି ଦିଏ ଦାଦା ?"

"ଜିଲିଙ୍ଗି, ତୁ ମତେ କଥାରେ ହରାଇଲୁ, ଭୋଜି ଖାଇବାକୁ ଯିବି କେବେ ?"

"ଆଜି, ମୋ ସାଙ୍ଗରେ।"

"ଏବେ ? ଆଉ ବେଳ କାହିଁ ?" ରୋଷେଇ ବ୍ରାହ୍ମଣ ଡାକି ଜିନିଷ ପତ୍ର ଧରି ଯିବାକୁ ବିଳମ୍ବ ଲାଗିବ, ପୁଣି ଦୁଇକୋଷ ବାଟ ଯିବାକୁ ହେବ। ରନ୍ଧା ହେବ କେବେ, ମୁଁ ଖାଇବି କେବେ ? ଉପରଓଳା ଯିବି। ଯା, ଘରଆଡ଼େ ସମସ୍ତଙ୍କଠାରେ ଦେଖା କରିବୁ। ଆଜି ତୁ ଏଠାରେ ଖାଇବୁ।"

"ପୁଣି ଗୋଟାଏ ବିଷମ କଥା କହେ। ମୁଁ ପରା ବିବାହ ହେଲି, ତୋ ଘରେ ଭାତ ଖାଇବି କିପରି ?"

"ଅହୋ ଜାଣିଲି, ଜାଣିଲି, ବିବାହ ନୋହିବାଯାଏ ସମସ୍ତେ ତୁମଠୁ ବଡ଼ ଜାତି, ବିବାହ ହେଲା ଉତ୍ତାରୁ ତୁମେ ସମସ୍ତଙ୍କଠାରୁ ବଡ଼ ଜାତି। ବିବାହ ଆଗରୁ ଆମ ହାତରୁ ଭାତ ଖାଉଥିଲୁ - ପାଞ୍ଚ ଦିନ ହେଲା ବିବାହ ହେଲୁ ବୋଲି ଆଉ ଖାଇବୁ ନାହିଁ। ଆଚ୍ଛା ଜିଲିଙ୍ଗି, ଆମ ଘରର ଭାତ ଖାଇବାକୁ ଘୃଣା ଲାଗିବ କି ?"

"ନା ଦାଦା, ଜାତିର ଗୋଟିଏ ବିଧି ଅଛି ବୋଲି ଖାଉନାହିଁ। ନୋହିଲେ କାଲି ଯାହାର ଭାତ ଆଦରରେ ଖାଉଥିଲି, ବାହାହେଲା ମାତ୍ରେ ତାହା ଘୃଣା ବୋଧ ହେବ କାହିଁକି ? ଭୁଜା, ଚୁଡ଼ା, ଖାଇବି, ଭାତ ଖାଇବି ନାହିଁ।"

"ହେଉ ହେଉ, ତୁ ଜଳଖିଆ କରି ବାହାରିଯିବୁ, ମୁଁ ଠିକ୍ ସନ୍ଧ୍ୟାବେଳେ ତୋ ଗାଆଁରେ ପହଞ୍ଚିବି। ଡେରାଘର ବନାଇଛ ତ ?"

"ଦୁଇ ବଖରା ଡକଘର ନିବୁଜା କରି ବନାଇ ଉପରେ ଛଣ ଛାଇଛୁଁ। ଘର ବାଟରେ ଗୋଟିଏ ବଡ଼ ଛାମୁଣ୍ଡିଆ ତିଆରି କରିଛୁଁ ନିଆଁ ଅନ୍ତର। ନିମନ୍ତେ। ରନ୍ଧାଘର

ଓ ଘକରଙ୍କ ରହିବା ଘର ବନାଇଛୁଁ। ନାଳ କାନ୍ଧରେ ଯେଉଁଠାରେ ତୋର ପସନ୍ଦ ହେବ, ତୁ ଗଲେ ସେଠାରେ ଶିକାର କରିବୁ ବୋଲି ଆମର ଜାତିଲୋକମାନଙ୍କୁ ରଖାଇଛୁଁ।"

"ଭଲାରେ ଜିଲିଙ୍ଗି, ମୋ ନିମନ୍ତେ ତୋର ଏତେ ବନ୍ଦୋବସ୍ତ। ଅସଲ କଥା, ତୋ ବରଟି କିପରି ? ସେ ଆସିଲା ନାହିଁ କାହିଁକି ?

"ତୁ ନିଜେ ଦେଖିବୁ, ମୁଁ ଆଉ କହିବି କାହିଁକି ? ନୂଆଁ ଲୋକ, ଲାଜ କଲା, ଆସିଲା ନାହିଁ।"

"ତୋ ସାଙ୍ଗରେ ଆସିବାକୁ ଲାଜ କଲା ?"

"ଗାଉଁଲିଆ ଲୋକର ଲାଜ ଅଛି, ଡର ଅଛି, ଭରସିଲାରୁ ଯା ଆସ କରିବ।"

"ଆଚ୍ଛା ତୁ ଯା, ବେଳବୁଡ଼କୁ ବାଟ ଦେଖୁଥିବୁ।"

ଜିଲିଙ୍ଗି ବିନା ବାକ୍ୟବ୍ୟୟରେ ଘର ଭିତର ଆଡ଼କୁ ଗଲା। ବେଶି କଥାରେ ତାର ପ୍ରୟୋଜନ କଣ ? ତାର କାର୍ଯ୍ୟସିଦ୍ଧି କଲା, ଘଲିଗଲା। ଦିନ ଦୁଇଟା ବେଳେ ଯୁବକ ଆପଣାର ବନ୍ଧୁକ ଧରି ନଳବନ୍ଧ ଅଭିମୁଖେ ଏକାକୀ ପ୍ରସ୍ଥାନ କଲେ। ଘଣ୍ଟାକ ଆଗରୁ ଘକର ବ୍ରାହ୍ମଣ ଘଲି ଯାଇଥିଲେ। ନଳବନ୍ଧ ବାଟରେ କୁଷୁମନାଳୀ ଅତି ଛୋଟ ଗ୍ରାମ। ଗ୍ରାମ ପ୍ରାନ୍ତରେ ଗୋଟିଏ ବଡ଼ ଜାମୁଗଛ। ସେହି ଗଛମୂଳରେ ଗୋଟିଏ ପଥର ଉପରେ ଜିଲିଙ୍ଗି ବସି ବାଟ ଅନାଉଛି। ଯୁବକ ତାକୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "କିରେ ଜିଲିଙ୍ଗି, ତୁ ସକାଳେ ନଳବନ୍ଧ ଯିବାର କଥା, ଏଠାରେ ଏକାକୀ ବସିଛୁ ?"

"ମୁଁ ତ ସକାଳେ ନଳବନ୍ଧ ଯାଇନାହିଁ। ତୋ ଘରୁ ଚୂଡ଼ା ଆଣିଥିଲି, ଏଠି ଖାଇଲି ଆଉ ତୋତେ ଅନାଇ ବସିଛି।"

"ଭଲ କଥା, ଆସ ତେବେ ଯିବା। ଦୁହେଁ ଆଗପଛ ହୋଇ ଘଲିଲେ। ଅଳ୍ପ ଦୂର ଯାଇ ପାହାଡ଼ ଚଢ଼ିଲେ। ଯୁବକ ଗୋଟିଏ କପୋତ ଶିକାର କଲେ। ଜିଲିଙ୍ଗି ତାହା ଆଣି ଧରିଲା। ପୁଣି କିଛି ଦୂର ଗଲାରୁ ପୁଣି ଗୋଟିଏ କପୋତ ଶିକାର କଲେ। ତାହା ମଧ୍ୟ ଜିଲିଙ୍ଗି ଧରିଲା। ଯୁବକ କହିଲେ, "ଜିଲିଙ୍ଗି, ତୁ ବନ୍ଧୁକଟା ଧରି ପାରିବୁ ? ମୁଁ କପୋତ ଯୋଡ଼ିକ ଧରି ଘଲିବି।"

"କି କଥା କହୁ ଦାଦା - ମୁଁ ସ୍ତ୍ରୀ ଲୋକ, ତୋର ପୂଜା ବନ୍ଧୁକ ଛୁଇଁବି। ମୋ ବାପ କହିଛି, ପୂଜା ବନ୍ଧୁକ, ପୂଜା ଧୂପ, କାଣ୍ଡ ସ୍ତ୍ରୀମାନେ ଛୁଇଁଲେ ଗୁଳି କିମ୍ବା କାଣ୍ଡ ଜନ୍ତୁକୁ ବାଜେ ନାହିଁ। ମୁଁ ତୋ ବନ୍ଧୁକ ଛୁଇଁଲେ ତୁ ଆଉ କେବେ ଜନ୍ତୁ ମାରି ପାରିବୁ ନାହିଁ।"

"ମୁଁ ଆଉ ବନ୍ଧୁକ ବୋହି ପାରିଲି ନାହିଁ। ପର୍ବତ ଘିବାରେ ମୋର କଷ୍ଟ ହେଉଛି। ତୁ ବନ୍ଧୁକ ନ ବୋହିଲେ ମୁଁ ଛାଡ଼ିଯିବି, ନୋହିଲେ ଅଧଘଣ୍ଟା ବସିବି।"

ବନ୍ଧୁକ ବୋହିବାକୁ ମୋର ଆପତ୍ତି ନାହିଁ, ତେବେ ତୋର ବହୁ ଏହା ଜାଣିଲେ ମତେ ଗାଳିଦେବେ।

ଯୁବକ କ୍ଳାନ୍ତ ଯୋଗୁଁ ବନ୍ଧୁକ ତା ହସ୍ତରେ ହେଉ ନଥିଲେ, ତାର କୁସଂସ୍କାର ଦୂର କରିବା ନିମନ୍ତେ ଏତେ ଜିଦ୍। ଯୁବକ ବସି ପଡ଼ିଲେ, ଜିଲିଙ୍ଗି ଅଗତ୍ୟା ବନ୍ଧୁକ ଧରି ଚାଲିଲା। କିଛିଦୂର ଗଲା ଉତ୍ତାରୁ ଗଛରେ ଗୋଟିଏ କୋଚିଲାଖାଇ ଦେଖି ଜିଲିଙ୍ଗଠାରୁ ବନ୍ଧୁକଟି ଛଡ଼ାଇ ନେଇ ପକ୍ଷୀକୁ ଲକ୍ଷ୍ୟକଲେ। କିନ୍ତୁ ଲକ୍ଷ୍ୟ ଭ୍ରଷ୍ଟ ହେଲା। ପକ୍ଷୀଟି ଉଡ଼ିଗଲା। ଏହା ଦେଖି ଜିଲିଙ୍ଗି କହିଲା, "ଦାଦା, ତୁ ମାନିଲୁ ନାହିଁ, ଫଳ ଦେଖିଲୁ ? ଏବେ ଉପାୟ କଣ ? ସମସ୍ତେ କଣ କହିବେ ? କାଲି ତ ଭଲ ଜନ୍ତୁ ଶିକାର କରିବୁ ?"

"କି କରାଯାଏ, ଯାହା ହେବାର ତ ହେଲା, ବନ୍ଧୁକ ଧରି ଚାଲ।"

ଉଭୟେ ଚାଲିଲେ, ପୁଣି ଗୋଟିଏ କପୋତ, ବନ୍ଧୁକ ଚଳାଇଲେ, କପୋତଟି ପଡ଼ିଲା।

"କିରେ ଜିଲିଙ୍ଗି, କପୋତଟି ପଡ଼ିଲା ଯେ, କାହିଁ, ବନ୍ଧୁକ ତ ବିଗିଡ଼ି ନାହିଁ।"

"ଆଗ ଚେଟଟା ତେବେ ତୁ ଜାଣିଶୁଣି ଉଡ଼ାଇ ଦେଲୁ ?"

"ହଁ।"

"ସ୍ତ୍ରୀ ବନ୍ଧୁକ ଛୁଇଁଲେ ତାହା ବିଗିଡ଼ିଯିବା କଥା ତେବେ ସତ ନୁହେଁ ?"

"ସତ ନୁହେଁ। ସ୍ତ୍ରୀର ହାତ ଯାହା, ପୁରୁଷର ହାତ ତାହା। ସ୍ତ୍ରୀ ଛୁଇଁଲେ ତାହା ବିଗିଡ଼ିବ କାହିଁକି ? ଦେଖିଲୁ ତ ଏଣିକି ଯେତେ ଚେଟ ମାରିବି, ଦେଖିବି, ତେତିକିଟି ପକ୍ଷୀ ପକାଇବି, ହରଡ଼ କେଉଁଠାରେ ମିଳିବେ ?"

"ହରଡ଼ ମାରିବୁ ? ଏହି ହୁଳା ତଳ ନାଳ ପାଖରେ ଗୋଟିଏ କଣିଗଛ ଅଛି । ସେଠି ବେଳବୁଡ଼କୁ ବୋଝ ବୋଝ ହରଡ଼ ବସନ୍ତି । ଯିବା ?"

"ଚାଲ ଚାଲ, ହରଡ଼ ମାରିବାକୁ ମୋର ବଡ଼ ଇଚ୍ଛା ।"

ଉଭୟେ ତଳକୁ ଉତୁରିଲେ । ବାସ୍ତବିକ ଗୋଟାଏ କଣି ଗଛରେ ଅନେକ ହରଡ଼ । ଏକ ଚୋଟରେ ପାଞ୍ଚଗୋଟି ହରଡ଼ ପଡ଼ିଲେ । ଜିଲିଙ୍ଗି ମହା ଆନନ୍ଦରେ ଗୋଟାଇଲା । କହିଲା, "ଆଉ ଅଳ୍ପଦୂରରେ ଏଠାରୁ ବଳି ବଡ଼ ଗଛଟାଏ ଅଛି, ସେଠି ଏଠୁଁ ଯାଇଥିବା ହରଡ଼ମାନେ ବସିଥିବେ, ଚାଲ ମାରିବା ।"

ପୁଣି ସେଠାକୁ ଗଲେ । ପକ୍ଷୀଗୁଡ଼ିକ ଟିକିଏ ସତର୍କ ହୋଇଥିଲେ । ତଥାପି ଏକ ଚୋଟରେ ଦୁଇଟା ପଡ଼ିଲେ । ବେଳ ବୁଡ଼ିବାକୁ ଅଳ୍ପ ଅବଶିଷ୍ଟ ଥିଲା । ଗଛମୂଳଟି ଛାୟା ବିଶିଷ୍ଟ ପର୍ବତ କାନ୍ଥ, ଏଣୁ ଟିକିଏ ଅନ୍ଧାରିଆ ଦିଶୁଥାଏ । ଯୁବକ ଗୋଟାଏ ପଥର ଉପରେ ବସିଲେ ଏବଂ ଦୁଇଖଣ୍ଡ ଏକ ହାତ ଲମ୍ବ ପରିମିତ ସଳଖ କାଠି ଭାଙ୍ଗି ଆଣିବାକୁ ଜିଲିଙ୍ଗିକୁ କହିଲେ । ପୁଣି ନିଜେ ଉଠିଯାଇ ପଟ ସଂଗ୍ରହ କଲେ, ଦୁଇ କାଠି ମଧ୍ୟରେ ପକ୍ଷୀମାନଙ୍କ ଗଳାଟିମାନ ହୋଇ କାଠିର ଉଭୟ ପାଖ ବାନ୍ଧଲେ, ପୁଣି ଓହଳାଇ ଧରିବା ନିମନ୍ତେ କାଠିର ପ୍ରତ୍ୟେକ ଅଗ୍ରଭାଗକୁ ଗୋଟିଏ ଡୋରରେ ବାନ୍ଧି ଦେଇ ଜିଲିଙ୍ଗିକୁ ଧରାଇ ଦେଲେ । "ବେଳ ବୁଡ଼ି ଆସିଲା, ମୁଁ ବନ୍ଧୁକ ଧରିବି, ତୁ ପକ୍ଷୀତକ ଧର" ବୋଲି କହିଲେ । ଜିଲିଙ୍ଗି ଠିଆ ହୋଇଥାଏ, ଯୁବକ ବସିଲା ସ୍ଥାନରୁ ନ ଉଠି କହିଲେ, "ଜିଲିଙ୍ଗି, ମୁଁ ଯୁବକ, ତୁ ଯୁବତୀ, ମୋ ସଙ୍ଗରେ ଏକାକୀ ଏପରି ନିର୍ଜନ ଅରଣ୍ୟରେ ବୁଲିବାକୁ ଭୟ କରୁନାହୁଁ ?"

"କି ଭୟ, ସଙ୍ଗରେ ବନ୍ଧୁକ ଅଛି । ମୁଁ ତ ଏକା ଏସବୁ ଜଙ୍ଗଲରେ ବୁଲେଁ । ଆଜି ସକାଳେ ଏକଲା ତୋତେ ଡାକି ଗଲି ।"

"ନାହିଁରେ ସେ ଭୟ ନାହିଁ । ମୋ ସଙ୍ଗରେ ଏକଲା ରହିବାକୁ ଭୟ ନାହିଁ ତ ? ଯୁବକ କାଳେ ଧରି ପଳାଇବ ବା କିଛି କହିବ କି ଅତ୍ୟାଚାର କରିବ ବୋଲି ଡର ନାହିଁ କି ?"

"କି କଥା କହିଲୁ ଦାଦା, ମୋର ବାପ ତୋର ବନ୍ଧୁ, ମୁଁ ତାର ଝିଅ, ତୋର ଭଉଣୀ । କେବଳ ଗୋଟିଏ ମା ପେଟରୁ ଜନ୍ମ ନେଲେ କଣ ଭାଇଭଉଣୀ । ସଂସାରରେ ମାନ୍ୟ ଧର୍ମ ନାହିଁକି ? ପିଲାକାଳରୁ ତୁ ଡାକୁଛୁ ମତେ ଭଉଣୀ ବୋଲି,

ମୁଁ ଡାକୁଛି ତତେ ବାବା ବୋଲି, ଏଥିରୁ ବଳି ସମ୍ବନ୍ଧ ଆଉ କଣ ଅଛି ? ତୁ ଏପରି କଥା ମତେ କହିବୁ କିପରି ବା ମତେ ଧରି ପକାଇବୁ କିପରି ? ଏଥିରେ ମୋର ବିଶ୍ୱାସ ନାହିଁ। ଏଣୁ ତୋ ସାଙ୍ଗରେ ଏକଲା ରହିବାକୁ ଡର ନାହିଁ। ରାତିରେ ମଧ ରିହବାକୁ ଶଙ୍କା ନାହିଁ। ପୂର୍ବେ ଥରେ ଦୁଇଥର ତୋ ସାଙ୍ଗରେ ଏକଲା ରହିଥିଲି, ଏବେ ମଧ ଅଛି। ଏକ ମା ପେଟରୁ ଜନ୍ମ ଭାଇ ଭଉଣୀ ଏକାକୀ ଏକା ଘରେ ରହୁଛନ୍ତି, ଯେବେ କୌଣସି ଦୁଷ୍ଟ ଭାଇ ଭଉଣୀକି ଧରି ପକାଏ, ତେବେ ସେଇଟା ସଂସାର ବାହାର କଥା। ଏପରି ତ କେବେ ଘଟେ ନାହିଁ। ତେବେ ତୁ ତ ମୋ ମା ପେଟର ଭାଇଠାରୁ ଅଧିକ, ଧର୍ମର ଭାଇ, ତୁ ଏପରି କରିବୁ ବୋଲି ମୋର ବିଶ୍ୱାସ ନାହିଁ। ମନ ବିଢ଼ିବାକୁ ଏପରି କଥା କହୁଛୁ। ତୋର ଖରାପ ଇଚ୍ଛା ଥିଲେ ତୋ ଉପରେ ମୋର ଏଡ଼େ ବିଶ୍ୱାସ ଜନ୍ମ ହୁଅନ୍ତା କି ? ତୋ ଦ୍ୱାରା ମୋର ତିଳେ ହେଲେ ଅନିଷ୍ଟ ହେବ ବୋଲି ମୋର ବିଶ୍ୱାସ ନାହିଁ।"

"ମୁଁ ଏପରି ନିର୍ଜନ ସ୍ଥାନରେ ଏପରି କଥାଟିଏ କହିଲା ଉତ୍ତାରୁ ମଧ ତୋର ମୋ ପ୍ରତି ଅବିଶ୍ୱାସ ନାହିଁ।"

"ନାହିଁ।"

"ଏପରିସ୍ଥଳରେ ଅନ୍ୟ କେହି ଯୁବକ ଏପରି କଥା କହିଥିଲେ ?"

"ମୁଁ ଅନ୍ୟ ଯୁବକ ସଙ୍ଗରେ ଏପରି ସ୍ଥଳକୁ ଆସନ୍ତି କାହିଁକି, ଯାହା ସଙ୍ଗରେ ମୋର ସମ୍ବନ୍ଧ ନ ଥାନ୍ତା କିମ୍ବା ଯାହା ପ୍ରତି ବିଶ୍ୱାସ ନଥାନ୍ତା ?"

"କେହି ବିଶ୍ୱାସ ଦେଖାଇ ଏପରି କଲେ ?"

"ସେତେବେଳେ ତାର ଉପାୟ ଦେଖନ୍ତି। ମିଛ କଥା ଉପରେ କଳ୍ପନା କରିବାର ଫଳ କଣ ? ଯାହାର ମନରେ ବଳ ଅଛି, ତାକୁ କିଏ କଣ କରିପାରେ ? ତା ଛଡ଼ା ମୋର ଦେହରେ ଏପରି ବଳ ଅଛି ଯେ, ତୋ ପରି ଦୁଇ ଜଣ ଲୋକଙ୍କୁ ମୁଁ ପରାସ୍ତ କରି ପାରେ। ମୁଁ ପରା ତୋର ଭଉଣୀ, ମୋର ବୁଦ୍ଧି ନାହିଁ କି ବଳ ନାହିଁ ବୋଲି ତୁ ଭାବିଛୁ କି ?"

"ମୁଁ ଯଦି ଆଜି ଏଠାରୁ ନ ଯାଏ ?"

"ମୁଁ ମଧ ଯିବି ନାହିଁ।"

"ରାତିରେ ରହିବୁ ?"

"ହଁ।"

"କିଛି ଭୟ ନାହିଁ ?"

"ନାହିଁ, ତୋର ଯେ ଦଶା ହେବ, ମୋର ସେହି ଦଶା।"

"ଜିଲିଙ୍ଗ, ତୋର ମନରେ ଏତେ ବଳ ଏବଂ ମୋ ଉପରେ ଏତେ ବିଶ୍ୱାସ ତାହା ଦେଖି ମୁଁ ନିଜକୁ ଧନ୍ୟ ମଣୁଛି। ସ୍ତ୍ରୀ ପୁରୁଷ ମଧ୍ୟରେ ଏପରି ବିଶ୍ୱାସ ଥିଲେ ସଂସାର ଅନ୍ୟ ପ୍ରକାର ହୁଅନ୍ତା। ଜିଲିଙ୍ଗି, ତୁ ମଇଳା ପାର୍ବତୀୟ ବାଳିକା, ସଭ୍ୟନାମଧାରୀ ଯୁବକମାନଙ୍କ ଗୁଣ ଓ ଚରିତ୍ର କଥା ତୋତେ ଜଣା ନାହିଁ। ଏଣୁ ତୋର ମୋ ପ୍ରତି ମଧ ଏତେ ବିଶ୍ୱାସ। ଆମେ ଦୁହେଁ ଭାଇ ଭଉଣୀ ଏବଂ ଆମର ସମ୍ବନ୍ଧ ଅତି ପବିତ୍ର।

"ଆଚ୍ଛା ତୁ ମୋ ସାଙ୍ଗରେ ଥିବାରୁ ତୋର ସ୍ୱାମୀ ସନ୍ଦେହ କରିବ ନାହିଁ ତ ?"

"ପୁଣି କଥାଟାଏ ବାହାର କଲା, ସନ୍ଦେହ କରିବ କାହିଁକି ? ସେ କି ମୋର କୌଣସି ଦୋଷ ଦେଖିଛି ? ମୋର ମନ ନିର୍ମଳ ଥିବାଯାଏ ମୋର ସ୍ୱାମୀ ମୋ ପ୍ରତି ସନ୍ଦେହ କରିବ ବୋଲି ମୋର ବିଶ୍ୱାସ ନାହିଁ। ବୃଥା ସନ୍ଦେହ କଲେ ସେଥିରେ ମୋର ଭୟ ନାହିଁ। ଅନ୍ୟ ଜାତିଲୋକ ଏପରି ସନ୍ଦେହ କରନ୍ତି ନାହିଁ। ନ ଦେଖି ଦଣ୍ଡ ଦିଅନ୍ତି ନାହିଁ। ଦୋଷ ଦେଖିଲେ କ୍ଷମା ଦେବେ ନାହିଁ। କେତେ ନୂଆ ନୂଆ କଥା ବାହାର କରୁଛ ? ଚାଲ ଯିବା, ବେଳ ବୁଡ଼ି ଆସୁଛି, ଶୀତ ମାଡ଼ିଆସିଲାଣି, ବାଟରେ ଭାଲୁ ଭେଟିବାଟି।"

"ଭାଲୁ ଦେଖିଲେ ତ ଭଲା ଶିକାରା କରିବା।"

ଏହା କହି ଯୁବକ ଗାତ୍ରୋତ୍ଥାନ କଲେ, ଉଭୟେ ପୁଣି ଆଗ ପଛ ହୋଇ ଚାଲିଲେ। ଯୁବକ ଧରିଛନ୍ତି ବନ୍ଧୁକ ଏବଂ ଯୁବତୀ ଧରିଛି ପକ୍ଷୀଗୁଡ଼ିକ। ଦୁଇ ଭାଇ ଭଉଣୀ ପବିତ୍ର ହାସ୍ୟାଳାପ କରି ଚାଲିଲେ। ଗ୍ରାମରେ ପହଞ୍ଚିଲାବେଳେ ମାଛି ଅନ୍ଧାର। କିଛିଦୂରଯାଏ ଲୁନ୍ଦା ଓ କେତେଜଣ ଲୋକ ଆସି ଅପେକ୍ଷା କରୁଥିଲେ। ଜିଲିଙ୍ଗିର ସ୍ୱାମୀ ଆସି ନଥିଲା। ଲୁନ୍ଦା ଯୁବକଙ୍କୁ ଦେଖିବାରୁ ତାର ଆନନ୍ଦର ସୀମା ରହିଲା

ନାହିଁ। ବହୁ ଦିନ ପରେ ବିଦେଶାଗତ ପୁତ୍ରକୁ ଦେଖିଲେ ପିତାର ଯେଉଁ ଆନନ୍ଦ, ତାହା ଲୁନ୍ଦା ଅନୁଭବ କରୁଥିଲା। ଯୁବକ ମଧ୍ୟ ଲୁନ୍ଦାର ବାତ୍ସଲ୍ୟ ଦେଖି ନିଜକୁ ଚରିତାର୍ଥ ମନେ କରୁଥିଲେ। ଜିଲିଙ୍ଗି ଲୁନ୍ଦା ହାତରେ ପକ୍ଷୀତକ ଦେଇ ଘର ଆଡ଼କୁ ଚାଲିଗଲା।

ଯୁବକ ଆପଣା ଡେରା, ଆଡ଼କୁ ଚାଲିଲେ। ଗ୍ରାମର ସମସ୍ତ ବୁଢ଼ା, ପିଲା, ଯୁବକ ଏବଂ ବିବାହକୁ ନିମନ୍ତ୍ରିତ ସମସ୍ତ କୋହ୍ଲ ଯୁବକଙ୍କୁ ପିଛା ଧରିଲେ। ଅନ୍ଧାର ହେଲାଣି ଖୁବ୍ ଶୀତ, ଛାମୁଣ୍ଡିଆ ତଳେ ନିଆଁ ଅତଡ଼ା ଦୂର୍ ଦୂର୍ ଜଳୁଛି। ସମସ୍ତେ ଛାମୁଣ୍ଡିଆ ତଳେ ଠିଆ ହେଲେ। ଯୁବକ ଡାଳ କୁଡ଼ିଆ ଭିତରେ ପଶିଲେ, ଲୁଗା ପାଲଟିଲେ, ମୁହଁ ହାତ ଧୋଇଲେ, ସମ୍ଭବତଃ କିଛି ଜଳଖିଆ ସାରି ଚଟ୍‌ପଟ ବାହାରି ଆସିଲେ। ପରିଚିତ ଗୋଟିଏ କୋହ୍ଲ ପିଲାକୁ ଡାକି କହିଲେ - ପାଞ୍ଚଗୋଟି ପକ୍ଷୀ ଜିଲିଙ୍ଗିର ଭାଗ। ଏଥିରୁ ପାଞ୍ଚଗୋଟା ପକ୍ଷୀ ତାକୁ ଦେଇଆସ।" ବାଳକ ପକ୍ଷୀମାନ ଧରି ଚାଲିଗଲା। ଯୁବକ ଖଟିଆ ଉପରେ ବସିଲେ। ସମସ୍ତେ ତଳେ ପୁଆଳ ଉପରେ ବସିଲେ। ନାନା କଥାର ଆଲୋଚନା ପଡ଼ିଲା। ଧାନ ଫସଲ କଥା, ଜିଲିଙ୍ଗିର ବିବାହ ବର୍ଣ୍ଣନା, ଭୋଜିଭାତ କଥା ଇତ୍ୟାଦି। ଯୁବକ ଲୁନ୍ଦାକୁ ଲକ୍ଷ୍ୟକରି ପଚାରିଲେ, "ବଡୁ, ଜିଲିଙ୍ଗି ଶାଶୁଘରକୁ କେବେ ଯିବ ?"

"ଜିଲିଙ୍ଗି ଶାଶୁଖାଇ, ତାର ଶାଶୁ ମଲାଣି। ସେ ଶାଶୁ ଘରକୁ ଯିବ ନାହିଁ। ଯୁଆଁଇର ଜମିବାଡ଼ି କିଛି ନାହିଁ କିମ୍ବା ବାପ ମା ନାହାନ୍ତି, ଏଣୁ ମୁଁ ଘରଯୁଆଁଇକରି ରଖିଲି। ଏଠି ଚାଷବାସ କରି ବଞ୍ଚିବି, ତୋର ନୌକରି କରିବ। ପିଲାଟି ଖୁବ୍ ଶିକାର ଜାଣେ।"

"ଭଲ କଥା ବଡୁ, ତୋର ଜୁଆଁଇ ଲୁଚିଛି କୁଆଡ଼େ ?"

"ଏତେ ଲୋକଙ୍କ ଆଗରେ ତତେ ଦେଖା କରିବାକୁ ଲାଜ କଲା, ଆମେ ଗଲେ ଆସିବ ଯେ।"

"ଆଚ୍ଛା ବଡୁ, କାଲି ଶିକାର କରିବା ତ ?"

"ହଁ ସେଥିନିମନ୍ତେ ତ ସମସ୍ତଙ୍କୁ ରଖିଛି। ଗୟଳମାଂସ କି ସମ୍ବର ମାଂସ ନ ହେଲେ କୋହ୍ଲମାନଙ୍କର ପେଟ ପୁରେ ନାହିଁ। ମୁଁ ସିନା ଖାସୁ ମାଂସ ଟିକିଏ ଖୁଆଇଛି।"

"ଜନ୍ତୁ ମିଳିବେ ତ ?"

"ଗୋଡ଼ାରୁ ମୁଗ କୋଳଥ ଉଠିନାହିଁ। ଫସଲ ଖାଇବାକୁ ଲମ୍ଫ ହୁଙ୍କାରେ ଜନ୍ତୁତକ ଜମା। ସେଇଟାକୁ କାଲିବା ଏଂବ ବଡ଼ ପର୍ବତକୁ ମଧ୍ୟ କଳିବା, ଅବଶ୍ୟ ଦୁଇ ଘରିପଟ ସମ୍ବର ମିଳିବେ।"

"ହେଲା, ତେବେ ତୁମେମାନେ ଯାଅ ଶୋଇବ, ମୁଁ ମଧ୍ୟ ଖାଇକରି ଶୋଇବି। କ୍ଳାନ୍ତ ଲାଗୁଛି।"

ସମସ୍ତେ ଉଠିଲେ ଯୁବକ ଉଠି ନଥିଲେ। ଜିଲିଙ୍ଗି ତାର ସ୍ୱାମୀ ସହିତ ଉପସ୍ଥିତ ହେଲା। ଅମ୍ଳାନ ବଦନରେ ତାର ସ୍ୱାମୀର ପରିଚୟ କରାଇଦେଲା। କୋହ୍ଲୁ ଯୁବକର ଶରୀରର ଗଠନ ଦେଖି ଖୁସି ହେଲେ। ଜିଲିଙ୍ଗି ସହିତ କଥାବାର୍ତ୍ତା ହେଲାବେଳେ ସେ ମୁଚକି ମୁଚକି ହସୁଛି। ଯୁବକ ଜିଲିଙ୍ଗିକି ପଚାରିଲେ, ଏ ତାର ନାମ କଣ ?

"ତାକୁ ପଚାର, ମୁଁ ତାର ନାମଟା କିପରି କହିବି ?"

ସେ ଧୀର ନମ୍ର ଭାବରେ କହିଲା 'ବିରଷା'। ଅନେକ ପଚାରି ପାରନ୍ତି। ଏ ନାମର କୌଣସି ଅର୍ଥ ଅଛି କି ? ନାହିଁ। ହିନ୍ଦୁମାନଙ୍କର ଅନେକ ଗୁଡ଼ିଏ ଦେବତା, ଏଣୁ ଦେବତାଙ୍କ ଅନୁଗ୍ରହ ପାଇବା ଆଶାରେ ପୁତ୍ରାଦିଙ୍କର ନାମ ରଖନ୍ତି ଦେବତାର ଦାସ, ଚରଚା ହେବାକୁ ଆଶା କରନ୍ତି ନାହିଁ। ପୂର୍ବ ପୁରୁଷଙ୍କ ନାମ ଦିଅନ୍ତି। ଜିଲିଙ୍ଗିର ବବର ପିତାମହର ନାମ 'ବିରଷା' ଥିଲା। ଏଣୁ ତଦନୁସାରେ ତାର ନାମକରଣ। ନାମରେ କାଞ୍ଚନିକ ଅର୍ଥ ଥିଲେ ନ-ଥିଲେ କେତେ ? ହିନ୍ଦୁମାନଙ୍କର ଗୁଡ଼ାଏ ଦେବତା ସୃଷ୍ଟି ହେବା ପୂର୍ବର ଯେଉଁ ଋଷି ପ୍ରଭୃତି ଥିଲେ, ସେମାନଙ୍କ ନାମର ମଧ୍ୟ କୌଣସି ଅର୍ଥ ନଥିଲା। ଯଥା- ଅଙ୍ଗିରା, ପୁଲହ, ଇତ୍ୟାଦି। ତେବେ ଅନେକ ପ୍ରାଚୀନ ନାମର ଅର୍ଥ ବୃଥାରେ ବୈୟାକରଣମାନେ ଟାଣିଟୁଣି କରିଅଛନ୍ତି। ସେ ଅର୍ଥ ନିରର୍ଥକ। ଲୁନ୍ଦା, ଜିଲିଙ୍ଗି, ବିରଷାର ଅର୍ଥ ନାହିଁ। ଏ ନାମ ଗୁଡ଼ାକ ବଂଶାନୁକ୍ରମ ରହିବ। ଲୋପ ପାଇବ ନାହିଁ।

ଯୁବକ କହିଲେ, ବିରଷା, ତୁ ଭଲ ଶିକାର କରି ପାରୁ, ମୁଁ ଜିଲିଙ୍ଗିଠାରୁ ଶୁଣିଲି।

"ହଁ, ସେ ମଧ ଶୁଣିଛି, ଦେଖିନାହିଁ। ଧୁଣକାଣ୍ଡିଆ ଶିକାରୀ, ତୋର ସାଙ୍ଗରେ ସମାନ ହେବ କି ? ପଟକେତେ ସମ୍ୟର, ଗୟଳ ମାରିଛି। ବିରଷା ବିନୀତ ଭାବରେ ଏହା କହିଲା।

ଜିଲିଙ୍ଗି ଟିକିଏ ମୁରବୀପଣିଆ ଦେଖାଇ କହିଲା - "ଦାଦା, ତୁ ଏହାକୁ ପାଇଲୁ, ଏ ତୋର ପଛୁଆ ହେବ। ଏହାକୁ ଶିଖାଇବୁ। ଦାଦା, ତୁ କୋହ୍ଲମାନଙ୍କୁ ମଦ ଖାଇବାକୁ ମନା କରୁ। ତୋର ଭଉଣୀକୁଆଁଇ ମଦ ଖାଏ ନାହିଁ। ତୁ ଖୁସି ହେବୁ। ଆମ ଜାତି କାମରେ ହାଣ୍ଡିଆ ପିଇବାର ବିଧି ଅଛି। ମୋର ବାହାରେ ତୋର ଭଉଣୀକୁଆଁଇ ବୟସର ପିଲାମାନେ ଖୁବ୍ ହାଣ୍ଡିଆ ପିଇଲେ। ଏ ପିଇଲା ନାହିଁ। ତୁଣ୍ଡରେ ଟିକିଏ ଛୁଆଇଁ ଦେଲା। ମୁଁ ଦେଖି ବଡ଼ ଖୁସି ହେଲି, ମୁଁ ଭାବିଲି, ମୋର ବର ଦାଦାର ଯୋଡ଼ି।"

"ଜାତି କାମରେ ଯେବେ ବିରଷା ଟା ତୁଣ୍ଡରେ ମଧ ହାଣ୍ଡିଆମଦ ଲଗାଇବାକୁ ନରାଜ ହେବ, ତେବେ ସିନା ତୋର ଦାଦାର ଯୋଡ଼ି।"

"ବୁଢ଼ା ବୁଢ଼ାମାନେ କହନ୍ତି, ଜାତି କାମରେ ଯେଉଁଲୋକ ହାଣ୍ଡିଆ ନ ପିଏ କିମ୍ୱା ତୁଣ୍ଡରେ ନ ଲଗାଏ, ତାକୁ ପୂର୍ବପୁରୁଷମାନେ ଅଭିଶାପ ଦିଅନ୍ତି। ଏଥିପାଇଁ ଇଚ୍ଛା ନଥିଲେ ମଧ କେହି କେହି ପିଅନ୍ତି। କେହି କେହି ନିୟମ ରକ୍ଷା ନିମନ୍ତେ ତୁଣ୍ଡରେ ଲଗାଇ ଦିଅନ୍ତି।"

"ଜିଲିଙ୍ଗି, ସ୍ତ୍ରୀ ବନ୍ଧୁକ ଛୁଇଁଲେ ବନ୍ଧୁକ ବିଗିଡ଼ିଯାଏ, ବାଜେ ନାହିଁ ବୋଲି ମଧ ବୁଢ଼ା ବୁଢ଼ାମାନେ କହନ୍ତି। ଦେଖିଲୁ ତ, ତୁ ବନ୍ଧୁକ ଛୁଇଁଲା ଉତାରେ ମୋ ବଂଧୁକ କିପରି ବାଜୁଛି। ପୁଣି କାଲି ସମ୍ୟର ଶିକାର କରିବି। ବୁଢ଼ାମାନଙ୍କର ସବୁକଥା ସତ ନୁହେଁ। ବିରଷା ମଦ ଛାଡ଼ିଲେ ତାର ଭଲ ହେବ।"

ଜିଲିଙ୍ଗି ବିରଷାକୁ ଲକ୍ଷ୍ୟକରି ଉପଦେଶ ଦେଲାପରି କହିଲା, "ଦେଖ, ଦାଦା ସବୁ ଜାଣେ। ତା କଥା ମାନିଲେ ଭଲ।"

"ଭଲ ବରଟିଏ ପାଇଛୁ ଜିଲିଙ୍ଗି, ଖୁବ୍ ସୁଖରେ ଘରଦ୍ୱାର କରି ରହିବ। ରାତି ହେଲାଣି, ଯାଅ ଶୋଇବ। ମୁଁ ମଧ ଖାଇସାରି ଶୋଇବି। କାଲି ସକାଳୁ ତ ପର୍ବତ ଚଢ଼ିବାକୁ ପଡ଼ିବ।"

"ଯାଉଛୁଁ, ଖାଇସାରିଲେ ତୋର ଭଉଣୀକୁଆଁଇକୁ ପଠାଇଦେବି, ସେ ଛାମୁଣ୍ଡିଆ ତଳେ ଶୋଇବ।"

"ଦରକାର କଣ ?"

"ଦେଖ, ତୁ ଝରରେ ଶୋଇବୁ, ସେ ଘରେ ଶୋଇବ ? ପହରା ଦେବ ନାହିଁ ତ ? ଦୁଇ ଶ୍ୱଶୁର କୁଆଁଇ ଆସିବେ।"

"ନା, ନା, ବଡ଼ୁକୁ ପଠାଇବୁ ନାହିଁ, ବିରଷା ଆସିଲେ ହେଲା।"

ଉଭୟେ ପ୍ରସ୍ଥାନ କଲେ।

ରାତି ପାହିଲା। ସୂର୍ଯ୍ୟୋଦୟ ନ ହେଉଣୁ ଜିଲିଙ୍ଗି ଦୁଧ ଲୋଟାଏ ଧରି ଛାମୁଣ୍ଡିଆ ତଳେ ହାଜର। ଯୁବକଙ୍କର ନିଦ ଭାଙ୍ଗିଥିଲା।

ଜିଲିଙ୍ଗି ଯୁବକକୁ ଡାକି କହିଲା - "ଦାଦା, ତୁ ଏତେବେଳଯାଏ ଉଠି ନାହୁଁ। ହାକାବାଲାଏ ଭାତ ଖାଇଲେଣି।"

"ମୁଁ କେତେବେଳୁ ଉଠି ଦାନ୍ତ ଘଷିଲେଣି, ପାଣି ଗରମ ହେଉଛି, ଗାଧୋଇବି, ଜଳଖିଆ କରିବି। ଦୁଧ କିଏ ଦୁହିଁଲା।"

"ଜିଲିଙ୍ଗି, ଯା ତୋର ବରକୁ ବନ୍ଧାଇକରି ଉଠାଇ ଦେବୁ।" "ଓହେ, ପଛୁଆଟାକୁ କିଏ ବନ୍ଧାଏ, ତୋତେ ସିନା ବନ୍ଧାଇଲେ ହେବ- ତୁ ବାହାରିଲା ବେଳକୁ ହୁଳହୁଳି ଦେବି ଯେ। ଆମ ଘର ବାଟରେ ତ ଯିବ।" ହସି ହସି ଜିଲିଙ୍ଗି ଚାଲିଗଲା।

କୋହ୍ଲତକ ଛାମୁଣ୍ଡିଆ ତଳେ ଜମା ହେଲେ। ଚାରି ପାଞ୍ଚଜଣ ପ୍ରକୃତ ଶିକାରୀ, ସେମାନଙ୍କ ହାତରେ ଧନୁଶର ଥିଲା। ବିରଷା ଦେଖିବାକୁ ଯେମନ୍ତ ହୃଷ୍ଟପୁଷ୍ଟ ଓ ମଜଭୁତ, ତାର ଧନୁକାଣ୍ଡ ମଧ ତଦ୍ରୂପ। ଧୋତିଖଣ୍ଡ ଲେଙ୍ଗୁଟି ପରି ଅଣ୍ଟାରେ ଭିଡ଼ି ପିନ୍ଧିଛି। ପଛ ପାଖରେ ଖଣ୍ଡିଏ ଟାଙ୍ଗିଆ ଖୋସିଛି। ଅଣ୍ଟାଭାଗ ଛଡ଼ା ଶରୀରର ସମସ୍ତ ଅଂଶ ଅନାବୃତ। ଯୁବକ ବିରଷାର ଶରୀରର ଗଠନ ଦେଖି ଭାରି ଆନନ୍ଦ ଅନୁଭବ କଲେ। ତାର ବାହୁ ଚିପି ଚିପି ମାଂସପେଶୀର ଗଠନ ବୁଝିଲେ। ପିଠି ଉପରେ ସ୍ନେହରେ ଥପୁଡ଼ାଇଲେ। ଧନୁକାଣ୍ଡ ହାତରୁ ଛଡ଼ାଇ ଆଣିଲେ। ଧନୁରେ ଗୁଣ ଚଢ଼ାଇଲେ, ଧନୁର ଗୁଣ କମ୍ ନଥିଲା। କହିଲେ, "ବିରଷା ତୋର ଉପଯୁକ୍ତ ଏ

ଧୁଣ ।” ଅନ୍ୟଯୁବକମାନଙ୍କୁ ଲକ୍ଷ୍ୟ କରି କହିଲେ, “ତୁମମାନଙ୍କ ଧୁଣ ଏହା ସମାନ ନୁହେଁରେ ପିଲେ । ସେମାନେ ସ୍ୱୀକାର କଲେ, ଜଣେକ ହାତରୁ ଗୋଟାଏ ଦୁଇଟା କାଣ୍ଡ ଛଡ଼ାଇ ଆଣି ଗୋଟାଏ ଛୋଟ ଶାଳଗଛ ଉପରକୁ ଲକ୍ଷ୍ୟଭେଦ କଲେ । ବାଜିଲା ନାହିଁ । କହିଲେ, “ବିରଷା, ବାଲ୍ୟାବସ୍ଥାରେ ଅଳ୍ପଦିନ ଧୁଣକାଣ୍ଡ ଧରୁଥିଲି । ଛାଡ଼ିଦେଲି । ଆଉ ବିନ୍ଧି ପାରିବି କିପରି ? ତୁ ମାର ତ ।” ବିରଷା ସେହି ଶାଳଗଛ ଉପରକୁ ଲକ୍ଷ୍ୟକରି ମାରିଲା । ଥରେ ନୁହେଁ, ଦୁଇଥର ନୁହେଁ, ତିନିଥର, ପ୍ରତ୍ୟେକ ଥର ବାଜିଲା । ଶେଷ ଥର ବଟାଟି ଫାଟିଗଲା । ଯୁବକ ବିରଷାର ପିଠିରେ ହାତ ଦେଇ ବାହାବା ଦେଲେ । ଲୁନ୍ଦା ଦୂରରେ ଥାଇ ଦେଖୁଥିଲା । ତାକୁ ଡାକି କହିଲେ, “ବଡ୍ଡୁ, ଦେଖିଲୁ ତୋ ଜୁଆଁଇର କରାମତି, ଭଲ କାଣ୍ଡ ମାରିପାରେ । ଆଜି କିପରି ଜନ୍ତୁ ଶିକାର କରିବ ଦେଖିବା । ଏହାକୁ ମୁଁ ସାଙ୍ଗରେ ରଖିବି । ମୋ ଘାଟକୁ ଗୟଳ ଆସିଲେ ମୁଁ ବନ୍ଧୁକରେ ମାରିବି, ସମ୍ବର ବା ଅନ୍ୟ ଜନ୍ତୁ ଆସିଲେ ବିରଷା ମାରିବ ।”

ହାକାବାଲା ଥିଲେ ପ୍ରାୟ କୋଡ଼ିଏ ଜଣ । ଯେଉଁମାନେ ବଡ଼ଲୋକମାନଙ୍କ ସଙ୍ଗରେ ହାକାକରି ଅଛନ୍ତି ବା ଦେଖିଅଛନ୍ତି କିମ୍ବା ରାଜାଙ୍କ ହାକା ବା ଉଚ୍ଚ ଦେଖି ଅଛନ୍ତି କିମ୍ବା ରାଜାଙ୍କ ହାକା ବା ଉଚ୍ଚ ଗୋରା ହାକିମଙ୍କ ହାକା, ସେମାନେ ମନେ କରି ପାରନ୍ତି ଯେ, କୋଡ଼ିଏ ଜଣରେ ପୁଣି ହାକା ? ଲାଟଙ୍କ ହାକାରେ ଚାରିପାଞ୍ଚ ହଜାର ଲୋକ ସିପାହୀ ସନ୍ତ୍ରୀ, ଢ଼ୋଲ ନିଶାଣ ମହୁରୀ ବିଗୁଲ ଯେତେ ଛୋଟ ହାକା ହେଲେ ମଧ୍ୟ ବାଦ୍ୟ ସହିତ ଶହେ ଦୁଇଶହ ଲୋକରୁ କମ ହେଲେ କିନ୍ତୁ ଆସିବେ କିପରି ? ମାତ୍ର ପାର୍ବତୀୟ କୋହ୍ଲମାନେ କହନ୍ତି, “ବେଶି ଲୋକରେ ମୂଷା ମରେ ନାହିଁ ।” ଅନେକ ଲୋକରେ ବେଶୀ ଗୋଳମାଳ, ଜନ୍ତୁ ଏଣେତେଣେ ପଳାଇ ଯାଆନ୍ତି । ସେମାନେ ଅଳ୍ପ ଲୋକରେ ଗୁଳି ପରିବାକୁ ପସନ୍ଦ କରନ୍ତି । ସେମାନଙ୍କୁ ଜନ୍ତୁଙ୍କ ଘାଟ ଜଣା । ବେଶି ହଲ୍ଲା ନ କରି ଜନ୍ତୁର ପିଛା ଧରନ୍ତି । ଜନ୍ତୁ ଠିକ୍ ଘାଟ ମୁଣ୍ଡକୁ ଯାଏ । ଘାଟବଲା ଅନାୟାସରେ ଶିକାର କରିପାରେ । ଲୁନ୍ଦା କୋହ୍ଲ ପ୍ରାଚୀନ ଶିକାରୀ । ସେ ଠିକ୍ ଲକ୍ଷ୍ୟରେ ଲୋକ ସଂଗ୍ରହ କରିଥିଲା । ଏବଂ ବୃଦ୍ଧ ହେଲେ ମଧ୍ୟ ତାର ଉତ୍ସାହ ଯଥେଷ୍ଟ । ମଲାଯାଏ କୋହ୍ଲର ଶିକାର କରିବାରେ ଆଳସ୍ୟ ନଥାଏ । ସମସ୍ତେ ଚାଲିଲେ । ଜିଲିଙ୍ଗି ହୁଳହୁଳି ଦେବାରେ ତ୍ରୁଟି କଲାନାହିଁ ।

ସମସ୍ତେ ହସି ହସି ଆନନ୍ଦ ମନରେ ଚାଲିଲେ । ଆନନ୍ଦିତ ହେବେ ନାହିଁ କାହିଁକି ? ପାର୍ବତୀୟ କୋହ୍ଲଜାତି ମାଂସପ୍ରିୟ ସମ୍ବର ଗୟଳ ବଡ଼ ଜନ୍ତୁ । ଗୋଟାଏ

ଜନ୍ତୁର ଅନେକ ମାଂସ । ଦୁଇ ଚାରିଟା ମରା ପଡ଼ିଲେ ତ ଅପର୍ଯ୍ୟାପ୍ତ ମାଂସ ମିଳିବ । ମିଳିବାର ଆଶା ଅଛି, ଏଣୁ ଭାରି ଖୁସି । ସ୍ତ୍ରୀମାନଙ୍କର ମଙ୍ଗଳ ହୁଳହୁଳି ସେ ଆନନ୍ଦର ଉଦ୍ଦୀପକ ।

ନିର୍ଦ୍ଦିଷ୍ଟ ପର୍ବତରେ ଶୀଘ୍ର ପହଞ୍ଚିଗଲେ । ଶିକାରୀମାନେ ଗୋଟାଏ ଗୋଟାଏ ଘାଟରେ ବସିଲେ । ଯୁବକ ଓ ବିରଷା ଏକ ଘାଟରେ ବସିଲେ । ଯୁବକ ଗୋଟାଏ ପଥର ଉପରେ ବସିଲେ, ସେ ପଥର ତଳରେ ବସିଲା । ସର୍ତ୍ତ ହେଲା ଯେ, ଗୟଳ ଆସିଲେ ଯୁବକ ମାରିବେ । ସମ୍ବର ଆସିଲେ ବିରଷା ମାରିବ । କଥା ସ୍ଥିର ହେଲା । ଉଭୟେ ତତ୍ପର ରହିଲେ । ହାକାବାଲାଏ ଚାଲିବାକୁ ଗଲେ । କିଛିକ୍ଷଣ ଗତ ହେଲା, ବିରଷା ଧନୁରେ ଗୁଣ ଚଢ଼ାଇଲା ଏବଂ ଗୋଟାଏ ଟିଆଳ କାଣ୍ଡ ବାଛି ଦକ୍ଷିଣ ହାତରେ ଧରି ଦଣ୍ଡାୟମାନ ହେଲା । ଦୂରରେ ବହୁ ଦୂରରେ କି ଶବ୍ଦ ଶୁଣାଗଲା, ଯୁବକଙ୍କୁ ଶବ୍ଦ ଲକ୍ଷ୍ୟ କରିବାକୁ ଇସାରା ଦେଲା । ନିକଟରେ ଥିବା ଗୋଟିଏ ବଡ଼ ଶାଳ ମୂଳକୁ ଯାଇ ଦଣ୍ଡାୟମାନ ହେଲା । ସେ ସ୍ପଷ୍ଟ ବୁଝି ପାରିଥିଲା ଯେ ଶବ୍ଦଟା ସମ୍ବରର ପାଦ ଶବ୍ଦ ଗୟଳର ନୁହେଁ ବା ହିଂସ୍ର ପଶୁର ନୁହେଁ । ଯୁବକ ମଧ୍ୟ ଉଦ୍ୟତ ହୋଇ ରହିଥିଲେ । ଯୁବକ ବିରଷାର ତତ୍‌ପରତା ପ୍ରତି ଲକ୍ଷ୍ୟ ରଖିଥିଲେ । ଗୋଟାଏ ଶିଙ୍ଗାଳ ଦୃଷ୍ଟିପଥରେ ପଡ଼ିଲା । ବିରଷା ବୃକ୍ଷାନ୍ତରାଳରେ ଥାଇ ବାମପାଦ ଉପରେ ଭାର ଦେଇ ଶରୀରର ଉପରିଭାଗକୁ ଆଗ ଆଡ଼କୁ ଦେଲା ଏବଂ ଧନୁଗୁଣ ଆକର୍ଷି ଟାଣି ଶର ନିକ୍ଷେପ କଲା । ସମ୍ବର ଦୁଇକୁଦା ଦେଇ ଭୂମିରେ ପଡ଼ିଗଲା । ମୁହୂର୍ତ୍ତର କାର୍ଯ୍ୟ । ବିରଷା ଯଥାସ୍ଥାନରେ ସଳଖ ହୋଇ ଦଣ୍ଡାୟମାନ ହେଲା । ଯୁବକଙ୍କ ଆଡ଼କୁ ଉଲ୍ଲାସ ଦୃଷ୍ଟି ନାହିଁ କିମ୍ବା ଆନନ୍ଦ ମନରେ ପଶୁ ଆଡ଼କୁ ଗତି କଲା ନାହିଁ । ଦଣ୍ଡାୟମାନ ରହିଲା, ଯେପରି କି କୌଣସି ଘଟଣା ହେବ ନାହିଁ । ବା ଫେରିଲା ଉଠାଇ ନେବାକୁ ହେବ । ନାନା ଲୋକେ ନାନା କଥା ପ୍ରସ୍ତାବ କଲେ । ଲୁନ୍ଦା କହିଲା, ସମ୍ବର ସେହିଠାରେ ପଡ଼ିଥିବ, ଫେରିଲାବେଳେ ନେବାକୁ ହେବ । ଅଳ୍ପଲୋକ ମଧ୍ୟରୁ କେତେଜଣ ଗଲେ, ବଡ଼ ପର୍ବତ ଚଲାଯିବ କିପରି ? ବୃଦ୍ଧ, ତା କଥା ସମସ୍ତଙ୍କର ଗ୍ରାହ୍ୟ । ସମ୍ବରକୁ ଟିକିଏ ପଦାସ୍ଥାନକୁ ଆଣି ରଖିଦେଲେ ଏବଂ ଅନେକଗୁଡ଼ିଏ ଡାଳ ଆଣି ତାକୁ ଘୋଡ଼ାଇ ଦେଲେ । ଭଲକରି ଘୋଡ଼ାଇ ଦେଲେ । ପୁଣି ବଡ଼ ପର୍ବତ ଅଭିମୁଖରେ ସମସ୍ତେ ଆହ୍ଲାଦରେ ଚାଲିଲେ । ଶିକାରୀମାନେ ଗୋଟାଏ ଗୋଟାଏ ଘାଟରେ ବସିଲେ । ବିରଷା ଓ ଯୁବକ ଏକ ପାଖରେ ପୂର୍ବ ପରି ବସିଲେ । ହାକା

ଆରମ୍ଭ ହେଲା । ଯୁବକଙ୍କ ଘାଟକୁ ଗୋଟାଏ ସମ୍ବର ଆସିଲା, ତା ପଛେ ପଛେ ଆଉ ଗୋଟିଏ। ବିରଷା ପ୍ରଥମଟାକୁ ବିନ୍ଧିଲା। ଯୁବକ ଦ୍ୱିତୀୟଟାକୁ ଗୁଳି ମାଇଲେ। ଯୁବକ ମାରିବାର କଥା। ଯେହେତୁ ବିରଷା ପ୍ରଥମକୁ ମାରିଲା ପରେ ଦ୍ୱିତୀୟକୁ ମାରିବାର ଅବସର ପାଇ ନଥିଲା। ସମ୍ବର ଦୁଇଟା ପଡ଼ିଲେ। ଆଉ ଜଣେ କୋହ୍ଲ ଯୁବକ ଗୋଟାଏ ସମ୍ବର ଖଣ୍ଡିଆ କଲା। ଏଣୁ ସମସ୍ତେ ଟାକୁ ଖୋଜିବାକୁ ଗଲେ। ପାଇବାକୁ ଟିକିଏ ବିଳମ୍ବ ହେଲା। ଦୂରରେ ଯାଇଥିବାବେଳେ ତା ଉପରେ ଯୁବକ ଗୁଳି ଚଳାଇଲେ, ସମ୍ବର ପଡ଼ିଗଲା। ବଡ଼ ପର୍ବରେ ସମ୍ବର ତିନି ଗୋଟା। ତିନିଟା ଶିଙ୍ଘାଳ ବଡ଼ ଏବଂ ଚର୍ବିଦାର।

ନିକଟରେ ଗୋଟାଏ ଯୋଡ଼। ସେଠାରେ ଯୁବକ ବସିଲେ, ଅନ୍ୟମାନେ ଫେର ତିନିଟା ସମ୍ବର ସେଠାକୁ ଆଣିଲେ। ମାର୍ଗଶିର ମାସ ସେତେବେଳେ ପ୍ରାୟ ଦିନ ଦୁଇଟା, ଭୋକରେ ସମସ୍ତେ ବ୍ୟସ୍ତ। ଯୁବକ ଲୁନ୍ଦାକୁ ଲକ୍ଷ୍ୟ କରି କହିଲେ, ବଡ଼, ଏଠାରୁ ଡେରା କେତେ ଦୂର ? ବଡ଼ ଭୋକ ଲାଗୁଛି।"

"ଦେଢ଼ କୋଶ ହେବ।"

"ପର୍ବତିଆ କୋଶ ତ ?"

"ତୁମର ନୂଆ ହିସାବ ପୁରୁଣା କାଳିଆ ବୁଢ଼ାକୁ ବି ଜଣା ?"

"ତୁମର ନୂଆ ହିସାବ ପୁରୁଣା କାଳିଆ ବୁଢ଼ାକୁ ବି ଜଣା ?" "ଧର ଆମ ହିସାବରେ ଅଢ଼େଇ କୋଶ। ବଡ୍ଡ; ପହଞ୍ଚିବା ବେଳକୁ ପର୍ବତ କାନ୍ଧକୁ ବେଳ ଯିବନି। ଏଠାରେ ମାଂସ ପୋଡ଼ି ଖାଇଲେ ହୁଅନ୍ତା"

"କୋହ୍ଲମାନେ ସେଟା ଖୋଜୁଥାଉଁ, ତୁ ସୁକୁମାର ବଡ଼ ଲୋକ, ତୁ ଖାଇ ପାରିବୁ ତ ?"

'ହଁ ବଡ୍ଡ, ଖାଇବି, ଆଜି କୋହ୍ଲଙ୍କ ସଙ୍ଗରେ ଜିଲିଙ୍ଗିର ଦ୍ୱିତୀୟ ବିବାହ ଭୋଜି ଖାଇବି, ବନ୍ଦୋବସ୍ତ କର।"

ଲୁନ୍ଦାର ଆଦେଶରେ କେତେଜଣ ଶୁଷ୍କ କାଠ ସଂଗ୍ରହ କରିବାରେ ଲାଗିଗଲେ, କେତେଜଣ ଓ ନିଜେ ଲୁନ୍ଦା ମାଂସ ତୟାର ପୁଣି ଅନ୍ୟ ଜନ୍ତୁ ଆସି ପାରେ, ଏହି ଆଶାରେ ରହିଲା। ଯୁବକ ପଥର ଉପରେ ଥାଇ ଯାବତୀୟ ବ୍ୟାପାର

ଲକ୍ଷ୍ୟ କରୁଥିଲେ। ବିରଷାର କ୍ଷିପ୍ରତା, ଶର ନିକ୍ଷେପ କରିବାରେ ଶାରୀରିକ ବଳ, ଲକ୍ଷ୍ୟଭେଦ, ଧନୁ ଶରର କ୍ଷମତା, ପଶୁର ପ୍ରାଣତ୍ୟାଗ, ସର୍ବୋପରି ବିରଷାର ଆସ୍ମର୍ଦ୍ଧାର ଓ ଗର୍ବର ଅଭାବ ପୁଣି ସଂଯମ ଓ ଏକାଗ୍ରତା। ଯୁବକ ଆଦିମବାସିର ଏତାଦୃଶ ଗୁଣର ପ୍ରଶଂସା କରୁ କରୁ ଭାବିଲେ, ଧନ୍ୟ ତା'ର ଶାରୀରିକ ଗଠନ, ଧନ୍ୟ ତା'ର ଶିକ୍ଷା। ଏତିକି କେବଳ ନୁହେଁ, ଭାବିଲେ ବନ୍ଧୁକ ବାରୁଦରୁ ସୃଷ୍ଟି ପୂର୍ବରେ ପୃଥିବୀର ସମସ୍ତ ଜାତି ଏହି ଶସ୍ତ୍ରଦ୍ୱାରା ଆତ୍ମରକ୍ଷା କରୁଥିଲେ ଓ ଶତ୍ରୁ ଜୟ କରୁଥିଲେ। ଭାରତୀୟ ବୀରମାନଙ୍କର ପ୍ରାଶସ୍ତ୍ୟ ଏହି ଧନୁକାଣ୍ଡ ହେତୁରୁ। ଆଜି ବନ୍ଧୁକ ଶାରୀରିକ ବଳ, ପୌରୁଷ ନାଶ କରିଅଛି। ଧନୁକାଣ୍ଡ ନିଜ ଦେଶର ପଦାର୍ଥ, ବନ୍ଧୁକ ଓ ତହିଁର ସରଞ୍ଜାମ ପର ଦେଶର। ଆମେ ପର ଧନ ଗ୍ରହଣ କରି କେବଳ ପଶୁ ପ୍ରାଣ ନଷ୍ଟ କରୁଅଛୁ। "ପର ଧନରେ ଲହର ପହର, ଛଡ଼ାଇ ନେଲେ ଲାଜେ ମର।"

ଆଉ ଜନ୍ତୁ ଆସିବାର ସମ୍ଭାବନା ନ ଦେଖି ଯୁବକ ପଥରରୁ ଓହ୍ଲାଇ ସନ୍ତର୍ପଣରେ ବିରଷା ଆଡ଼କୁ ଗଲେ। ତା'ର ସ୍କନ୍ଧରେ ତାଙ୍କ ଦୁଇ ହାତ ରଖି ଜୋରରେ ହଲାଇ ଦେଇ କହିଲେ, "ବାହାଦୂର ଭାଇ ବିରଷା, ତୋର ଧନୁଶର ତୁଳନାରେ ମୋର ବନ୍ଧୁକ କିଛି ନୁହେଁ। ତୋତେ ଧନ୍ୟବାଦ।" ବିରଷା ନତମସ୍ତକରେ ଟିକିଏ ସ୍ମିତ ହାସ କଲା ସିନା, ଯୁବକଙ୍କୁ ଆପ୍ୟାୟିତ କରିବା ନିମନ୍ତେ ପଦେ ଅଧେ କିଛି କହିଲା ନାହିଁ। ବିରଷା ଅସଭ୍ୟ। ସଭ୍ୟତାର ପ୍ରଶଂସାବାଦ, ରୀତିରକ୍ଷା, ବାକ୍ୟରେ ଆଦାନ ପ୍ରଦାନର ମୂଲ୍ୟ ତାକୁ ଜଣାନାହିଁ।

ଉଭୟେ ଯାଇ ସମ୍ବରକୁ ଦେଖିଲେ, କାଣ୍ଡଟି ଠିକ୍ ବକ୍ଷ ସ୍ଥଳରେ ଭେଦ କରିଥିଲା ଏବଂ ଆର ପାଖ ଚମଡ଼ାରେ ମୁନାଇଥିଲା। ଯୁବକ ଦେଖିଲେ, ଘା ବଡ଼ ସାଙ୍ଘାତିକ, ପଶୁର ପ୍ରାଣ ଯିବାର କଥା। ହାକାବାଲାଏ ଉପସ୍ଥିତ ହେଲେ। ବିଚାର ପଡ଼ିଲା ଯେ, ସମ୍ବରକୁ ଘରକୁ ପଠାଇ ଦିଆଯିବ। କରିବାକୁ ବସିଲେ। କାଷ୍ଠର ଅଭାବ କ'ଣ? ଦୁଇ ଗଦା କାଷ୍ଠର ଅଭାବ କ'ଣ? ଦୁଇ ଗଦା କାଷ୍ଠରେ ଅଗ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା। ଗୋଟିଏ ସମସ୍ତ କୋହ୍ଲଙ୍କ ନିମନ୍ତେ ଗୋଟିଏ ଯୁବକଙ୍କ ନିମନ୍ତେ। ଯୁବକଙ୍କ ନିମନ୍ତେ ତିନି ପ୍ରକାର ଉପାଦେୟ ପାଗ ପ୍ରସ୍ତୁତ ହେବାର ଯୋଗାଡ଼ କରାଗଲା। ଜୋଡ଼ ବାଲିରେ ଗୋଟିଏ ଗର୍ତ୍ତ କରାଗଲା, ସେଠାରେ ପ୍ରକାଣ୍ଡ ଅଗ୍ନି ଜଳାଗଲା, ସେଥିରେ ଛୋଟ ଛୋଟ ପଥର ମଧ୍ୟ କିଛି ଦିଆଗଲା। ନିଆଁ ଜଳୁ ଜଳୁ

ଲୁନ୍ଦା ଗୋଟାଏ ତାପୂର୍ଯ୍ୟ ସିଆରି ପତ୍ରର ପୁଡ଼ା ତୟାର କଲା । ସେଥିରେ ଗୋଟା କେତେ ବନ ହଳଦୀ ପତ୍ର ଦିଆଗଲା । ତହିଁରେ କୋମଳ ମାଂସ କିଛି ରଖାଯାଇ ପୁଡ଼ାଟିକୁ ଅତି ଯତ୍ନରେ ବନ୍ଧାଗଲା । ଉତ୍ତପ୍ତ ଗର୍ତ୍ତ ମଧ୍ୟରେ ସେହି ପୁଡ଼ାକୁ ଦିଆଯାଇ ତହିଁ ଉପରେ ଉତ୍ତପ୍ତ ବାଲି ଦିଆଗଲା । ତହିଁ ଉପରେ ଅଙ୍ଗାର ରଖାଗଲା । ଗୋଟାଏ ବାଉଁଶ ନଳରେ କେତେକ ମାଂସ ଭରାଗଲା । ବାଉଁଶ ନଳ ଉପରେ ମାଟି ଲିପାଯାଇ ତାକୁ ମଧ ଅଙ୍ଗାର ଉପରେ ଦିଆଯାଇ ଘୋଡ଼ାଇ ଦିଆଗଲା । ଏହା ଛଡ଼ା ଯୁବକ ଗୋଟାଏ ବିନା ମସଲାର ଗାଳାକା କବାବ ତୟାର କଲେ । କୋହ୍ଲମାନେ ଅନେକ ସ୍ଥାନରେ ନିଆଁ ଜାଳି ନାନା ଉପାୟରେ ମାଂସ ପୋଡ଼ିବାକୁ ଲାଗିଲେ । ବେଶୀ ବିଳମ୍ବ ହେଲା ନାହିଁ । ଆନୁମାନିକ ଏକ ଘଣ୍ଟା ମାଂସ ତୟାର ହେଲା ।

"ବନ୍ଧୁ, ଏ ଭୋଜିରେ ଦିଳିଙ୍ଗି ନାହିଁ । ତାକୁ ଥୋଡ଼େ ପୁଡ଼ା ମାଂସ ନେଇ ଦେଲେ ହୁଅନ୍ତା । ମୋର ତୟାର ମାଂସ ସେ ଖାଇବ ।"

"ଖାଇବ ନାହିଁ କାହିଁକି ? ଭାତ ସିନା ଖାଇବ ନାହିଁ, ମାଂସ କି ପିଠା ଖାଇବାରେ ତ ଦୋଷ ନାହିଁ ।"

ଲୁନ୍ଦାର ବାକ୍ୟ ଏଠାରେ କୋହ୍ଲଙ୍କର ମାନବ ଧର୍ମଶାସ୍ତ୍ର । ଯୁବକ ଆପଣା ନିମନ୍ତେ ପ୍ରତ୍ୟେକ ପାଗରୁ ଉପଯୁକ୍ତ ପରିମାଣ ରଖି ବାକିତକ ସେହି ପୁଡ଼ାରେ ନଳରେ ଦେଲେ ।

"ଅଳ୍ପ ମାଂସରୁ ତାକୁ ଏତେ ଦେଲେ ତୁ ଖାଇବୁ କ'ଣ ?"

"ମୋ ନିମନ୍ତେ ମୁଁ ଯଥେଷ୍ଟ ରଖିଛି ।"

ସମସ୍ତେ ବସି ଭୋଜନ କଲେ । ଏ ପ୍ରକାର ମାଂସ ଯେ ଅରୁଚିକର, ତାହା ନୁହେଁ । ତାହା ଛଡ଼ା ଭୋକ ଥିଲେ ସବୁ ସ୍ୱାଦୁ ଲାଗେ । ଅନ୍ୟ ପଦାର୍ଥ ବିନା ଲୁଣରେ ଖାଇହୁଏ ନାହିଁ, ମାତ୍ର ମାଂସରେ ଲୁଣ ବେଶୀ ଦରକାର ହୁଏ ନାହିଁ । ମାଂସ ପୋଡ଼ିଲେ ଏବଂ ଭୋକ ବେଳେ ଖାଇଲେ । ଯୁବକଙ୍କର ଏପରି ଅଭ୍ୟାସ ଥିଲା, ଏହା ନୂତନ ନୁହେଁ । ମାଂସ ସଙ୍ଗେ ଦୁଇ ଋରି ରକମ ବନ୍ୟ ଆଳୁ ଯେ ପୋଡ଼ାଯାଇ ନ ଥିଲା ତାହା ନୁହେଁ । ଭାଇଗା ଓ ଖଣି ଆଳୁ କୌଣସି ଅଂଶରେ ବିଲାତି ଆଳୁ ଅପେକ୍ଷା ମନ୍ଦ ନୁହଁନ୍ତି ।

ସମସ୍ତେ ଭୋଜନ ଶେଷ କରି ଜୋଡ଼ର ନିର୍ମଳ ଜଳ ପେଟେ ପେଟେ ପିଇ ସମ୍ବର ମାଂସ ଧରି ଗ୍ରାମ ଆଡ଼କୁ ଚାଲିଲେ। ଡ଼େରାରେ ପହଞ୍ଚିଲା ପରେ ସୂର୍ଯ୍ୟାସ୍ତ।

ସନ୍ଧ୍ୟା ଉତାରେ ଛାମୁଣ୍ଡିଆ ତଳେ ପୁଣି ସଭା ବସିଲା। କେତେଜଣ ବୁଢ଼ା, ପିଲା ଆସି ବସିଲେ। ସେଦିନର ଶିକାର ତଥା ମାଂସ ଖିଆ କଥା ପଡ଼ିଲା। ଲୁନ୍ଦା ମନ ଖେଦରେ କହିଲା, "ବାବା, ମୋର ବୟସ କେତେ ଜଣା ନାହିଁ, ତେବେ ମୋ ସାଙ୍ଗରେ ଲୋକ ଆଉ କେହି ନାହାନ୍ତି। ମୋ ଭାଗ୍ୟରେ ଥିଲା ଯେ, ଆଜି ତୋ ସଙ୍ଗରେ ଭୋଜି ଖାଇଲି। ଏ ଭାଗ୍ୟ କି କୋହ୍ଲମାନଙ୍କର ଆଉ ଘଟିବ। ତୁମର ବୁଢ଼ା ମୁଢ଼ାମାନେ ଆମ୍ଭମାନଙ୍କୁ ଯେଉଁ ଦୟା କରୁଥିଲେ ଓ ଭାବ ରଖୁଥିଲେ, ତୋର ପୁଅମାନେ କି ଜିଲିଙ୍ଗିର ପୁଅ ସଙ୍ଗରେ ସେ ଭାବ ରଖିବେ ? କେବେ ନୁହେଁ। ଦିନକୁ ଦିନ ରୀତି ବଦଳୁଛି। କେଜାଣି ତୁ ଥିବା ଯାଏ ଜିଲିଙ୍ଗିକୁ ଦୟା କରୁଥିବ। ମୁଁ ଆଜି ଅଛି, କାଲି ନାହିଁ। ଆଜିଠାରୁ ମୋର ବଡ଼ଲୋକର ସ୍ନେହ ସରିଲା।"

"ବଡ୍ରୁ, ତୋର ଖୁବ୍ ବଳ ଅଛି, ଆଉ ବର୍ଷ କେତେ ବଂଚିବୁ।" ମୁଁ ବଞ୍ଚିବା କଥା ପଡ଼ି ନାହିଁରେ ବାବୁ, ତୁମ୍ଭମାନଙ୍କର ଦୟା, ସ୍ନେହ, ଭାବ ଦିନକୁ ଦିନ କମୁଛି, ଆମେ ଜାଣୁ। ଲୁନ୍ଦାର ସେ ସମ୍ମାନ ଆଉ ରହିବ କି ? ମଲେ ଭଲ।

"ମୋର କେଉଁ ପୁରୁଖା ଲୋକେ ଏଠାକୁ ଆସି ଏହି ସ୍ଥାନରେ ଗଛ କାଟି ବାସ ବନାଇଥିଲେ, ମୋତେ ଜଣା ନାହିଁ। ଅନେକ ବର୍ଷରୁ ଏହି ଗ୍ରାମରେ ଅଛୁଁ। ମାଟି ଘଷି ପଡ଼ିଛୁ। କଷ୍ଟ ପଡ଼ିବାର କାର ଘର ହୋଇ ଅନ୍ୟସ୍ଥାନକୁ ଉଠିଗଲେଣି। ପିତୃ ଅର୍ଜିତ ମାଟି ମୁଁ ଛାଡ଼ି ନାହିଁ। ବାପ ଅଜା ମଲେ ଏଠାରେ, ମୁଁ ମରିବି ଏଠାରେ। ତୁମ ପୂର୍ବପୁରୁଷ ସହିତ ମୋର ପୂର୍ବ ପୁରୁଷର ସଭାବ ଥିଲା। ଏକା ଭାଇ ଦାଦା ପରି ସେମାନେ କାଳ କଟାଇଥିଲେ। ତୁ ତାଙ୍କର ବାଟରେ ଚାଲି ମୋତେ ବଡୁ ବୋଲି ଡାକିଲୁ।

ତୋର ପୁଅ ହେଲେ ଜିଲିଙ୍ଗିକୁ ଅତା ବୋଲି ସମ୍ମାନ କରିବେ କି ନାହିଁ, ଏଣିକି ଛୋଟ ବଡ଼ର ବହୁତ ପ୍ରଭେଦ ଦେଖାଯାଉଛି। ତା ଛଡ଼ା ଆମ ଜାତିର ଅବସ୍ଥା ବଡ଼ ମନ୍ଦ ହେଉଛି। ବଣ ଜନ୍ତୁମାନଙ୍କର ଜଙ୍ଗଲରେ ଯେଉଁପରି ଅଧିକାର, ଆମର ମଧ ସେହିପରି ଅଧିକାର ଥିବାର ଭାବିଥିଲୁଁ। ବାଘ ଜନ୍ତୁଧରି ପେଟପୋଷେ, ଆମେ ମଧ ଜନ୍ତୁ ମାରି ପେଟ ପୋଷୁଥିଲୁଁ। ଆମଠାରୁ ସେ ଅଧିକାର ଧୀରେ ଧୀରେ ଯାଉଛି।

ଜନ୍ତୁ ମାରି ଖାଉଥିଲୁଁ । ଆମର ପ୍ରଧାନ ଜୀଉପିପନ୍ଥା ବନ୍ଦ ହେଲା । ଡାହିକାଟି ବିରିଙ୍ଗା ମାରି ଫସଲ କମାଉଥିଲୁଁ, ତାହା ବନ୍ଦ ହେଲା, ବାକି ଚଷ - ଚଷ ବଡ଼ ବ୍ୟୟସାଧ୍ୟ । ହଳ ବିହନ ଯୋଗାଡ଼ କରିବା ବଡ଼ କଷ୍ଟ । ଲୋକେ ଦେବେ କାହିଁକି ? କଣ ଦେଖି ଦେବେ ? କେବେ କେବେ କେହି ଋଣ ଆଣି ପରିଶୋଧ ନକରି ଅନ୍ୟ ସ୍ଥାନକୁ ପଳାଇ ଯାଆନ୍ତି । ଏଣୁ କୋହ୍ଲ ଉପରେ ଲୋକଙ୍କର ବିଶ୍ୱାସ ନାହିଁ, ଋଣ ଦେଉଛି କିଏ ? ପୂର୍ବେ ଆମେ ଯାହା ଉପାର୍ଜନ କରୁଥିଲୁଁ, ସେଥିରୁ କିଛି ରଜମାନଙ୍କୁ ଦେଉଥିଲୁ, ତାହା ଆମର କର ମାଲଗୁଜରି ହୋଇଥିଲା । ରୀତିମତ ମାଲଗୁଜାରି ଦେବାକୁ ତ ବଳ ନାହିଁ, ଏଣୁ ଧୀରେ ଧୀରେ ଜମି ଉଠିଯିବ । ଜଙ୍ଗଲ କାଟି ପୂର୍ବପୁରୁଷମାନେ ଜମି ବନାଇଥିଲେ ବୋଲି ପୁଅ ତାହା ରକ୍ଷା କରିବାକୁ ଯୋଗ୍ୟ ବୋଲି ବିଚାର ହେଉନାହିଁ । ମାଲଗୁଜାରି ନ ଦେଲେ ଜପ୍ତି ଓ ନିଲାମ । ଭଲ ଜାତିମାନେ ନିଲାମରେ ଗ୍ରାମ ଧରିବାକୁ ଟାକି ରହିଛନ୍ତି । ଟଙ୍କାର ଲୋଭ ସମସ୍ତଙ୍କୁ ଧରି ରଖିଛି । ରଜାମାନେ ଛାଡ଼ିବେ କାହିଁକି ? ହାତରୁ ଆମ୍ଭମାନଙ୍କ ପୂର୍ବ ପୁରୁଷମାନଙ୍କ ତୟାର ଗ୍ରାମଟିମାନ ଚାଲି ଯାଉଛି । ଏ ଜାତିର ଚୋରି ଡକାୟତି ବା ଜଙ୍ଗଲରେ ଲୁଚି ଶିକାର କରିବା ଭିନ୍ନ ଉପାୟ ନାହିଁ । ଦଣ୍ଡ ତ ଅଛି । ଜଣେ ଦୁଇଜଣ ଚୋରି ଡକାୟତିରେ ଧରା ପଡ଼ିଲେ ସମସ୍ତେ କୋହ୍ଲ ଜାତିର ନିନ୍ଦା । କେବଳ ତାହା ନୁହେଁ, ନିର୍ଦ୍ଦୋଷ ଉପରେ ମଧ୍ୟ ଅତ୍ୟାଚାର । ବାବା, ଆମ ଜାତିର ସରଳତା ଓ ସତ୍ୟବାଦିତାର ମୂଲ୍ୟ ଏଣିକି କିଛି ନାହିଁ । ଆମେମାନେ ଆଦିମବାସୀ, ଆମର ବିଶ୍ୱାସ ଯେ ପ୍ରଥମେ ଏ ଦେଶମାନଙ୍କୁ ଆମେମାନେ ଆସି ଆପଣା ପ୍ରାଣ ବିନିମୟରେ ଜଙ୍ଗଲ କାଟି ଗ୍ରାମ ବସାଇଥିଲୁଁ । ଆମମାନଙ୍କୁ ରକ୍ଷା କରିବା କି ରାଜାର କର୍ତ୍ତବ୍ୟ ନୁହେଁ ? ପୂର୍ବକାଳରେ ରୀତି ସବୁ ଓଲଟିଗଲା । ଏଣିକି ସବୁଠାରୁ ପଇସା ହେଲାଣି ମୂଳ । ଏହା ମୋର ମାଟି, ଏହା ମୋର ଗ୍ରାମ ବୋଲି ମନ କହୁଛି । ଏଥିରେ ମୋର ବି ମମତା ଓ ସ୍ନେହ ଅଛି, ତାହା କିଏ ବୁଝିବ ? ଏହାକୁ ଛଡ଼ାଇ ନେଲେ ମନରେ କି ଦୁଃଖ ହେବ, କିଏ ବୁଝିବ ? ବାବା, ବାପ ଅଜାର ମାଟି ମୁଁ ରଖିଛି, ଛାଡ଼ି ନାହିଁ, ତୋର ଦୟା ଥାଉ, ମଲାଯାଏ ମୋଠାରୁ ଏ ମାଟି ଯିବ ନାହିଁ ।

"ବାବା, ଅମଲାମାନେ, ଭଲଲୋକମାନେ ଅନେକ ଉପଦେଶ ଦିଅନ୍ତି, ମାତ୍ର ସାହାଯ୍ୟ ତ କେହି ଦିଅନ୍ତି ନାହିଁ । ଆମ ଜାତିଟା କିପରି ରହି ଆସିବେ, ତାର ଉପାୟ ତ କେହି କରନ୍ତି ନାହିଁ । ଶୃଙ୍ଖଳା ଶିକ୍ଷା ଦେଲେ ସେଥିରେ ଲାଭ କଣ ? ମୁଁ

ଜାଣୁଛି, ଆମ ଜାତିର ନାଶ ଘଟିବ। ଘଟୁ, ଘେର ଡକାୟତ ହୋଇ ବଞ୍ଚିବା ଅପେକ୍ଷା ମଲେ କ୍ଷତି କ'ଣ?"

"ବାବା, ତୁ ଆମ ଜାତି ଲୋକଟିଏ ଦେଖିଲେ ମଦ ଖାଉ କିନା ବୋଲି ପଚାରୁ, ମଦ ଖାଇବେ ନାହିଁ ବୋଲି ଉପଦେଶ ଦେଉ। ଆମ ପୂର୍ବପୁରୁଷର ଲୋକମାନେ ଅରଖି ମଦ ପିଉଥିଲେ କି ନା ସନ୍ଦେହ। ଏ ଦେଶମାନଙ୍କରେ କିଏ ମଦ ଗାଳୁଥିଲା? ହାଣ୍ଡିଆ ପିଉଥିଲେ ସତ। ତାହା ମଧ୍ୟ ସବୁଦିନେ ନୁହେଁ। ଜାତିକାମ ପଡ଼ିଲେ ପିଅନ୍ତି। ସେଇଟା ଗୋଟାଏ ଖାଦ୍ୟ ପରି। ଅନେକ ଗୁଡ଼ାଏ ନ ପିଇଲେ ନିଶା ହୁଏ ନାହିଁ। ଏବେ ତ ମଦ ଦୋକାନ କେତେ ଯେ ତାର ହିସାବ ନାହିଁ। ଆମ ଜାତି ତ ମଦୁଆ ଜାତି, ତାଙ୍କ ଆଗରେ ମଦ ରଖିଦେଲେ ସେମାନେ ପିଇବେ ନାହିଁ କି? ଗାଈ ବଳଦ ଆଗରେ କୁଣ୍ଡାଗୁଡ଼ିଏ ରଖିଦେଇ ବଳଦକୁ ଖାଇବେ ନାହିଁ, ଖାଇବେ ନାହିଁ ବୋଲି ଉପଦେଶ ଦେଲେ ସେମାନେ ଟକ ଛାଡ଼ିବେ? ମୁଁ ତ ବିଚାର କରେଁ, ଯେ ମଦ ଦୋକାନ ବସାଇଲା ସେ ଦୋଷୀ। ମଦ ପିଇବା ଲୋକର ଦୋଷ କ'ଣ? ଲୋଭ ଛାଡ଼ିବାକୁ କେତେ ଲୋକଙ୍କର ବଳ ଅଛି, ବାବା, କହତ?"

"ପାଠ ପଢ଼ ବୋଲି କହିବ। ଛୁଆ ପିଲାଏ ତ ପାଠ ପଢ଼ିଯିବେ, ତାଙ୍କୁ ଖାଇବାକୁ ଦେବ କିଏ? ଖାଇବାକୁ ଦାନା ନାହିଁ, ପାଠ ପଢ଼ିବେ କିପରି? ମଦ ଦୋକାନ ଉଠାଇ ଦିଅ, ମଦ ପିଇବାକୁ ମନା କର। ଖାଇବାର ବନ୍ଦୋବସ୍ତ କର, ପାଠ ପଢ଼ାଅ, ଯାବତୀୟ ଜାତିମାନଙ୍କର ଉଠିବାକୁ ଉପାୟ ନାହିଁ, ତାଙ୍କ ଉପରେ କାହାରି ସହାନୁଭୂତି ନାହିଁ। ସେମାନେ ବଞ୍ଚି ପାରିବେ ନାହିଁ। ଏହା ନିଶ୍ଚିତ କଥା। ମୁଁ ବୁଢ଼ା ଲୋକ, ଅନୁଭବ ଦ୍ୱାରା ଜାଣିଛି।"

"ତୁ ମୋର ପୁଅ ପରି, ଏଣୁ ମନ ଫିଟାଇ ସବୁ କହିଲି, ମନରେ ଦୁଃଖ କରିବୁ ନାହିଁ। ବେଶି ରାତି ହେଲାଣି, ଯା ଖାଇ ପିଇ ଶୋଇବୁ, ଆମେ ଯାଉଛୁ।"

ସମସ୍ତେ ପ୍ରସ୍ଥାନ କଲେ।

ଅନ୍ତରାଳରୁ ଲୁନ୍ଦା କୋହ୍ଲ ଗଲା, ମାତ୍ର କଥାତକ ଯୁବକଙ୍କ ମନରୁ ଗଲା ନାହିଁ। ଭୋଜନ କଲେ। ଭୋଜନରେ ତୃପ୍ତି ନାହିଁ। ଶୋଇଲେ, ନିଦ ପଡ଼ିଲା ନାହିଁ। ଲୁନ୍ଦାର କଥା, ଲୁନ୍ଦାର କଥା, ଝିଅ ଡାକି ଆସିଲା ଭୋଜି ଖାଇବାକୁ, ଆଜି ବାପ ଯେ ଅମୂଲ୍ୟ ଭୋଜି ଦେଲା, ତାହା ଜୀବନରେ ଭୁଲି ହେବ ନାହିଁ। ଏ ଭୋଜନରେ

ତୃପ୍ତି ଅଛି, ଅଜୀର୍ଣ୍ଣ, ନାହିଁ। ପୁନଃ ପୁନଃ ଖାଇବାକୁ ଇଚ୍ଛା, ମାତ୍ର ମିଳିବ କାହୁଁ? ଯୁବକ ଭାବିଲେ, "ମୁଁ ଭଦ୍ର ସନ୍ତାନ, ସଭ୍ୟ, ଲୁନ୍ଦା କୋହ୍ଲ ଆଦିମବର୍ଣ୍ଣ ଅସଭ୍ୟ। ଆମେମାନେ ଶିକାର ଗର୍ବରେ ଗର୍ବିତ, ମହାଗର୍ବିତ ନିଜକୁ ଜ୍ଞାନୀ ବିବେଚନା କେତେ ଆସ୍ପର୍ଦ୍ଧା କରୁଁ, କିନ୍ତୁ ଦେଖିବାକୁ ଗଲେ ଲୁନ୍ଦା ଯେ ମାନବତତ୍ତ୍ୱ ମାନବ ଇତିହାସକୁ ଆପେ ଆପେ ଆୟତ୍ତ କରିଅଛି ଏବଂ ନିଜ ଜାତିର ଭବିଷ୍ୟତ ସମ୍ବନ୍ଧରେ ଯାହା ଆଲୋଚନା କରିଅଛି, ତାହା କେତେଜଣ ଆଧୁନିକ ରାଜନୈତିକ ଆଲୋଚନା କରୁଅଛନ୍ତି ଏବଂ ଜାତିର ଉପକାର ନିମନ୍ତେ ଉପାୟ ଉଦ୍ଭାବନ କରୁଅଛନ୍ତି, ତାହା ମୋର ବୁଦ୍ଧିର ଅଗୋଚର। ଆମ୍ଭେମାନେ ଯେଉଁ ଉପଦେଶ ଦେଉଁ - ଯେଉଁ ଉପଦେଶ ଆମ୍ଭେମାନେ ଆମ ପୁରୁଷଙ୍କଠାରୁ ଶିକ୍ଷା କରିଅଛୁଁ, ତାହା ଯେ କାର୍ଯ୍ୟକାରୀ ନୁହେଁ, ତାହା ଲୁନ୍ଦା ପ୍ରମାଣ କରାଇ ଦେଲା। ଆମ ଉପଦେଶର ମୂଳଦୁଆ ଠିକ୍ ନ ଥିବାରୁ ଲୁନ୍ଦା ଦୁଇ କଥାରେ ତାହା ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେଲା। କାହାର ଉପଦେଶରେ ଆମ ପୂର୍ବ ପୁରୁଷ ତ ଆଦିମ ଓ ଆର୍ଯ୍ୟଜାତିର ସମ୍ବନ୍ଧକୁ ଛିନ୍ନ କରିବାକୁ ବସିଲୁଁ। କିଏ କହି ପାରିବ କି ? କେବଳ ଉପଦେଶ ଓ ଜାତିର ଉଠାଇ ପାରିବ କି ? କେବଳ ଉପଦେଶ ଏ ଜାତିର ଉଠାଇ ପାରିବ କି ? ନା, ଆର୍ଯ୍ୟ ଅନାର୍ଯ୍ୟ ମଧ୍ୟରେ ଘୋର ଶତ୍ରୁତା। କଳା ଗୋରା ମଧ୍ୟରେ ଶତ୍ରୁତା। କଳାର ଉତ୍ଥାନ ହେବାର ସମ୍ଭାବନା କମ୍। ଆଦିମ ଜାତିର ପତନ ଅବଶ୍ୟମ୍ଭାବୀ। ଲୁନ୍ଦା ଠିକ୍ କହିଲା, ଏ ଜାତିର ନାଶ ଘଟିବ। ପର୍ବତିଆ ମୁଣ୍ଡା ଥାଇ ସେମାନେ ମୁଖ ଟେକି ପାରିବେ ନାହିଁ। କେତେ ଜାତି ଗଲେଣି, ଏ ଜାତ ମଧ ଯିବେ, ଯାଆନ୍ତୁ।

ପୂର୍ବରେ କଣ ଅନାଟନ ନଥିଲା ? ଏବେ ସମସ୍ତଙ୍କର ଅନାଟନ ହେଲା, ସଭ୍ୟତାର ନାମାନ୍ତର କି ଅନାଟନ ? ସଭ୍ୟତାର ଅନ୍ୟ ନାମ ଅଭାବ। ଅଭାବ ପରା ଉଦ୍ଭାବନୀ ଶକ୍ତିର ଜନକ ହୋଇପାରେ। ଏ ଦେଶର ସଭ୍ୟମାନଙ୍କର ଅଭାବ ପୂରଣ ହୁଏ - ଗରିବଙ୍କର କପାଳ ପୋଛା ଧନରୁ, ମା ମାଟିର ଦାନରୁ। ସଭ୍ୟଙ୍କର ଅଭାବ ବୁଝି ମାଟିର ଉର୍ବରତା ତ ବୃଦ୍ଧି ପାଉନାହିଁ। ଗରିବଙ୍କ ଉପରେ ସୁତରାଂ ଚାପ ପଡୁଅଛି। ସେମାନଙ୍କର ଉଠିବାର କ୍ଷମତା ନାହିଁ। ମଦ୍ୟ ସମ୍ବନ୍ଧରେ ଲୁନ୍ଦା ଯାହା କହିଲା, ତାହା ମିଛ କି ? ଯେଉଁମାନେ ସଂଯମ ଶିକ୍ଷା କରି ନାହାନ୍ତି, ତାଙ୍କ ନିକଟରେ ମଦ ଦୋକାନ ଖୋଲିଲେ ସେମାନେ ତାହାପାନ ନ କରିବେ କାହିଁକି ? ପରର ଆର୍ଥିକ କ୍ଷତିରେ ଓ ନୈତିକ ଚରିତ୍ର ହାନିରେ ଜଣଙ୍କର ଲାଭ

ଦୋଷାବହ ନୁହେଁ କି ? ଏତାଦୃଶ ଲାଭର ନାମ ସଭ୍ୟତାର ଅଭାବ ପୂରଣ କି ?"

ଏହା ଭାବୁଭାବୁ ଯୁବକ ଶୋଇ ପଡ଼ିଲେ, କେତେକ୍ଷଣ ଶୋଇଲେ କେଜାଣି । ଜିଲିଙ୍ଗି ଆସି ଡାକିଲା, "ଦାଦା, ଉଠିଲୁଣି କି ?" ଯୁବକଙ୍କର ନିଦ୍ରାଭଙ୍ଗ ହେଲା । ନିତ୍ୟକ୍ରିୟା ସମାପନାନ୍ତେ ଘରକୁ ଫେରିବାର ବନ୍ଦୋବସ୍ତ କଲେ । ତାହା ଦେଖି ଜିଲିଙ୍ଗି କହିଲା, "ଦାଦା, ଆଉ ଦିନେ ଦୁଇଦିନ ରହ ।"

"ଯଥେଷ୍ଟ ହେଲା ଜିଲିଙ୍ଗି, ଯଥେଷ୍ଟ ହେଲା, ତୋର ବିବାହ ଭୋଜି ଖୁବ୍ ମିଳିଲା, ଖୁବ୍ ଖାଇଲି । ପ୍ରୟୋଜନ ଅଛି ଘରକୁ ଯିବି, ପୁଣି ତ କେତେଥର ଆସିବି । ତୁ ସୁଖରେ ଥା ଇଚ୍ଛାହେଲେ ଡାକିବୁ ।"

ଲୁନ୍ଦା ବିରଷା ଉପସ୍ଥିତ ହେଲେ । ଯୁବକ କହିଲେ, "ବନ୍ଧୁ, ଯାଉଛି, ତୁ ଯିବାର ଦର୍କାର ନାହିଁ, ବିରଷା ମୋ ସଙ୍ଗରେ ଯାଉ ।" ଜିଲିଙ୍ଗି ଓ ଲୁନ୍ଦା କିଛି ଦୂର ଆସିଲେ ।

ଲୁନ୍ଦା କହିଲା, "ବାବା, କାଲି ରାତିରେ ମୁଁ ତୋତେ କେତେ କଥା କହି ପକାଇଲି, ରାଗ କରିବୁ ନାହିଁ । "ବନ୍ଧୁ, ରାଗ କରିବି ? ତୋର ଉପଦେଶ ଯେ ଅମୂଲ୍ୟ, ପ୍ରତ୍ୟହ ଶୁଣିବାକୁ ପାଉଥିଲେ କୃତାର୍ଥ ମନେ କରୁଥାନ୍ତି ।"

ଜିଲିଙ୍ଗି ସରଳା ବାଳିକା, ସେ ଏ କଥାବାର୍ତ୍ତାର ମର୍ମ କଣ ବୁଝିବ ? ହସି ହସି କହିଲା, "ଦାଦା ତୁ ମୋର କଥା ରକ୍ଷା କରି ଭୋଜି ଖାଇବାକୁ ଆସିଲୁ, ତୋର ବଡ଼ ଦୟା । ଯା ଦାଦା ବାଟେ ବାଟେ, ମନେ ରଖିଥିବୁ ।"

ଏ ସ୍ନେହପୂର୍ଣ୍ଣ ବିଦାୟବାକ୍ୟ ଯୁବକଙ୍କର ଅମୂଲ୍ୟ ପାଥେୟ, ହସି ହସି ଯୁବକ ବିରଷା ସହିତ ପଛକୁ ଅନାଇ ପ୍ରସ୍ଥାନ କଲେ ।



*(ଉତ୍କଳ ସାହିତ୍ୟ ମାସିକ ପତ୍ରିକା ୧୯୩୨ ସାଲରେ ପ୍ରକାଶିତ)*

# ସନ୍ତାନ ସ୍ନେହ

ଅ ହୋ । କି ଭୀଷଣ ବୃଷ୍ଟି । କେବଳ ବୃଷ୍ଟି ନୁହେଁ, ପ୍ରବଳ ବାତ୍ୟା ଘଡ଼ଘଡ଼ି ମେଘ ଗର୍ଜନ । ବଜ୍ରପାତ ଓ କରକା ବୃଷ୍ଟି । ପ୍ରଳୟଙ୍କରୀ କାଣ୍ଡ । ସତେ ବା ମରୁତ୍‌ଗଣ ରୁଦ୍ର ରୂପ ଧାରଣ କରି ଏ ଧରାଟାକୁ ଜଳମଗ୍ନ କରିବାକୁ ଚେଷ୍ଟିତ । ଏଣୁ ଆଗରୁ ଗର୍ବରେ ମସ୍ତକୋତ୍ତଳନକାରୀ ମହୀରୁହ ନିଚୟକୁ ଭୂ-ଲୁଣ୍ଠିତ କରିବାକୁ ବ୍ୟସ୍ତ । ପଶୁପକ୍ଷୀ ପଥିକଙ୍କର ବଡ଼ ବିପଦର ସମୟ ।

ସନ୍ଧ୍ୟା ୭ ଘଣ୍ଟା ଘୋର ଅନ୍ଧକାର । ଅନ୍ୟ କଥା ତେଣେ ଥାଉ, ନିଜର ବସ୍ତ୍ର ମଧ୍ୟ ଦୃଶ୍ୟ ହୁଏ ନାହିଁ । ବାଟ କଥା ବା ପଚାରେ କିଏ ? କେବଳ ଅନୁଭବ ଦ୍ୱାରା ଅତିସାବଧାନରେ ପରିଚିତ ପଥରେ ପଦକ୍ଷେପ କରି ପାଦେ ପାଦେ ଚାଲିବା କଥା ।

ଦୁଇ ଜଣ ବ୍ୟକ୍ତି ଏତାଦୃଶ ସମୟରେ ଆପଣା ଗ୍ରାମ ଆଡ଼କୁ ଅଗ୍ରସର ହେଉଥିଲେ । ଏ ଦୁହିଁଙ୍କ ଜଳସିକ୍ତ କରିବା ନିମନ୍ତେ ଓ କରକାପାତ ସହିବାକୁ ହେବ ବୋଲି ପ୍ରଭଞ୍ଜନ ଆଗରୁ ଛତା ଯୋଡ଼ିକ ଓଲଟ ପାଲଟ କରି ଭାଙ୍ଗି ପକାଇଥିଲା । ଅଜସ୍ର ଜଳଧାରାପାତ ସହି ବାଟରେ ଚାଲିବା ପଥିକ ପକ୍ଷରେ ଯେପରି କଷ୍ଟ କର ଓ ଭୟପ୍ରଦ ବୃକ୍ଷମୂଳରେ, ଆଶ୍ରୟ ନେବା ତାଠୁ ବଳି ବିପଦଜନକ ଓ ଭୀତିପ୍ରଦ । ଚାରି ଆଡ଼େ ରଡ଼ମଡ଼ ହୋଇ ଗଛମାନଙ୍କର ଶାଖା ପ୍ରଶାଖା ଭାଙ୍ଗି ପଡ଼ିଛି । ଆକାଶରେ ବିଦ୍ୟୁତ୍ ଖେଳୁଅଛି । କିଏ ବା କହିପାରେ କେଉଁ ଗଛ ଉପରେ କେତେବେଳେ ବଜ୍ରପାତ ହେବ ? ଅତ୍ୟୁଚ୍ଚ ବୃକ୍ଷମାନଙ୍କ ଠାରୁ ଦୂରବର୍ତ୍ତୀ କୌଣସି ଘନ ପତ୍ର ମଣ୍ଡିତ ଅନୁଚ୍ଚ ବୃକ୍ଷର ଆଶ୍ରୟ ମିଳିଲେ କଥଞ୍ଚିତ ଭୟ, ଉପଦ୍ରବ ଓ କଷ୍ଟରୁ ରକ୍ଷା ମିଳିବା ସମ୍ଭବ । ମାତ୍ର ଗାଢ଼ ଅନ୍ଧକାରରେ ଏତାଦୃଶ ଗୋଟିଏ ବୃକ୍ଷର ଦର୍ଶନ ମଳିବା ସହଜ ନୁହେଁ ବାଟ ଚାଲି ଅଛନ୍ତି, ବିଦ୍ୟୁତ୍ ଝଲକରେ । ସଡ଼କ ନିକଟରେ ଗୋଟିଏ ଇଚ୍ଛାନୁରୂପ ବୃକ୍ଷ ନଜରରେ ପଡ଼ିଲା । ଦୁହେଁ ସେଠାକୁ ଗଲେ । ବୃକ୍ଷଟି ଯେ କେବଳ ଶାଖା ଓ ପଲ୍ଲବରେ ସାନ୍ଦ୍ର, ଏପରି ନୁହେଁ । ବୃକ୍ଷତଳେ ଗୋଟିଏ ସମତଳ ଚଟାଣ ଥିଲା । ଏହା ଦେଖି ସେ ଦୁହିଁଙ୍କର ଆନନ୍ଦର ସୀମା ରହିଲା ନାହିଁ । ତଳେ ଶ୍ଳକ୍ଷ୍ଣପଥର ଉପରେ ସାନ୍ଦ୍ର ଛତ୍ରାକାର ବୃକ୍ଷ ତଳରୁ ଉପର ଯାଏ ଶାଖା ପ୍ରଶାଖା କୌଣସି ଭୟ [illegible]

ହେଲେ ବୃକ୍ଷ ଉପରକୁ ଯିବାର ଅନ୍ତରାୟ ଆଦୌ ନାହିଁ। ଭୟରେ ଭାବିଲେ ଯେବେ ଝଡ଼ର ପ୍ରକୋପ ନକମେ ତାହେଲେ ହୁଏତ ରାତ୍ରଟାଯାକ ସେଠାରେ ଅତିବାହିତ କରିବାକୁ ହେବ, ଲୁଗା ଚିପୁଡ଼ି ତୁନି ହୋଇ ବସିଲେ।

ସେଠାରୁ ଗ୍ରାମ ପ୍ରାୟ ଏକମାଇଲ ହେବ। ଅଧାମାଇଲ କେବଳ ଜଂଗଲ। ସ୍ଥାନଟି ନିରାପଦ ନୁହେଁ। ବନ୍ୟଜନ୍ତୁଙ୍କର ଯିବା ଆସିବା ପଥ। ଏତାଦୃଶ ବୃଷ୍ଟିବେଳେ ଭଲ୍ଲୁକ ଓ ବନ୍ୟ ଶୂକର ଏ ସ୍ଥଳରେ ବିଚରଣ କରନ୍ତି। ବ୍ୟାଘ୍ର ମଧ ସମୟ ସମୟରେ ବିଶେଷତଃ ଏପରି ବୃଷ୍ଟି ବେଳେ ବାଟେ ବାଟେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଏ। ଚିତା ବାଘ ? ଚିତାବାଘ ତ ଗ୍ରାମ ଭିତରେ ପ୍ରବେଶ କରୁଅଛି। ଏ ଅରଣ୍ୟରେ ରହିବା କଥା ପଚ୍ଛରେ କିଏ। ମନୁଷ୍ୟ ଆସନ୍ନ ବିପଦକୁ ଦୁରୂହ କରି ମଣେ। ବୃଷ୍ଟି ଭୟଟା ଶ୍ୱାପଦ ଭୟରୁ ମଧ ଅତ୍ୟଧିକ ବୋଲି ମନେ ହେଲା। ବର୍ଷା ପବନ ଚାଲିଅଛି। ଦୁଇ ସଂଗୀ ତୁନିହୋଇ ବସିଥାନ୍ତି। ଅନ୍ଧାର, ଏଣୁ ଆଖି ଥାଉଁ ଥାଉଁ ଅନ୍ଧ। ମାତ୍ର ଶବ୍ଦ ଗ୍ରହଣ କରିବାକୁ କାନଡେରି ରହିଥାନ୍ତି କିଛି ସମୟ ବିତିଗଲା। ନିକଟରେ ଥିବା ଗୋଟିଏ ବୃକ୍ଷମୂଳରୁ ଶୀତରେ କମ୍ପୁଥିବା କୌଣସି ବ୍ୟକ୍ତିର ଉହୁ ଉହୁ ଶବ୍ଦ କର୍ଣ୍ଣରେ ପ୍ରବେଶ କଲା। ପୁଣି ବାୟୁରେ ଉଭେଇଗଲା। ସଂଗୀ ଦୁହେଁ ଏହା ନଶୁଣିଲା ପରି ରହି ଥାନ୍ତି। ପୁଣି 'ଉହୁ' ସହିତ "ମାଗୋ" ଏହି ଆର୍ତ୍ତସ୍ୱର ସେମାନଙ୍କର କର୍ଣ୍ଣଗୋଚର ହେଲା। ଜଣେ କହିଲେ ବାମ ଆଡ଼େ ଜଣେ ମନୁଷ୍ୟର ଶବ୍ଦ ଶୁଣାଗଲା ପରା ? ଆରକ, ଭୂତ ପ୍ରେତର ଶବ୍ଦ ନୁହେଁ ବୋଲି କିଏ କହିପାରେ ? ଏ ସ୍ଥାନଟା ବା-ଏ-ସ୍ଥାନରୁ ଅଳପ ଦୂରରେ ତ କୋହ୍ଲମାନଙ୍କର ମଶାଣି ଭୂଇଁ।

ଉଭୟେ ତୁନି ହୋଇ କାନେଇଲେ। ପୁଣି ପୂର୍ବବତ୍ ଅସ୍ପଷ୍ଟ ଆର୍ତ୍ତନାଦ ଶୁଣାଗଲା।

ଡାକିବି କି ?

ଉଁହୁଁ ରହନା ଟିକିଏ।

ପୁଣି ସେହି ଆର୍ତ୍ତନାଦ ଶୁଣାଗଲା। ମନୁଷ୍ୟ ବୋଲି ଏମାନଙ୍କର ହୃଦବୋଧ ହେଲାରୁ ଡାକଦେଲେ। ତୁମେ କିଏ କେଉଁଠାରେ ଅଛ ?

ମୁଁ ଦୁଃଖିନୀ ଏଠି ବିପଦରେ ପଡ଼ିଛି।

ଏହାକହି ବିଚାରୀ ଭାବିଲା ଯେ ଏ ବିପଦ ବେଳେ ଏଠାକୁ ମନୁଷ୍ୟ ଆସିଲେ କାହୁଁ ? ତାର ଭାଗ୍ୟ ସୁପ୍ରସନ୍ନ । ସଙ୍ଗ ପାଇଲେ ଅନାୟାସରେ ଗ୍ରାମକୁ ଯାଇ ପ୍ରାଣରକ୍ଷା କରିପାରିବ । ଯୁବକ ଦୁହେଁ ଏତାଦୃଶ ଦୁଃଖ ସମୟରେ ଜଣେ ସ୍ତ୍ରୀଲୋକ ଏକାକିନୀ ଅରଣ୍ୟରେ ବିପଦଗ୍ରସ୍ତ ହୋଇ ପଡ଼ିଥିବା କଥା ଭାବି ବିସ୍ମିତ ହେଲେ । ଏବଂ ସେମାନଙ୍କର କ୍ଷଣିକ ବିପତ୍ତି କେବଳ ଦୁଃଖିନୀର ସାହାଯ୍ୟ ନିମନ୍ତେ ଉପସ୍ଥିତ ହୋଇଥିଲା ବୋଲି ସେମାନେ ଭାବିନେଲେ । ଉଭୟେ ଅଗ୍ରସର ହୋଇ କହିଲେ କୌଣସି ଭୟ ନାହିଁ ଆମ୍ଭ ନିକଟକୁ ଆସ ।

ରମଣୀ ଆପଣା ବୋକଚ ଧରି ସେ ଦୁହିଁଙ୍କ ସଙ୍ଗରେ ପଥର ଉପରକୁ ଆସିଲେ । ଘୋର ଅନ୍ଧକାର, କେହି କାହାରି ରୂପରେଖ ଦେଖିବା ସମ୍ଭବ ନଥିଲା । ବୟସର ପରିଚୟ ପାଇବା ମଧ୍ୟ ସମ୍ଭବ ନଥିଲା । ବିପତ୍ତି ବେଳେ ଜାତି, ବୟସ, ବର୍ଣ୍ଣର ବିଚାର ରହେ ନାହିଁ । ସମ୍ମୁଖୀନ ବିପତ୍ତିରୁ ରକ୍ଷା ପାଇବାହିଁ ମୂଳ ଉଦ୍ଦେଶ୍ୟ ଥାଏ । ତିନିଜଣ ପଥର ଉପରେ ଉପବେଶନ କଲେ ।

ତୁମେ ଏକାକିନୀ ଏଠାକୁ ଆସିଲ କିପରି ଓ କି ନିମନ୍ତେ ?

ମୁଁ ସାମାନ୍ୟ ବୃଷ୍ଟି ହେଉଥିଲାବେଳେ ଆସିଲି । ବର୍ଷାରୁ ରକ୍ଷାମିଳିବ ବୋଲି ଗୋଟିଏ ବଡ଼ ଗଛ ମୂଳରେ ଆଶ୍ରୟ ନେଇଥିଲି । ବେଶି ବର୍ଷା ପବନରେ ଗୋଟିଏ ଶାଖା ଭାଙ୍ଗି ପଡ଼ିବାରୁ ତାର ନିକଟରେ ଥିବା ପଳାସ ଗଛ ମୂଳରେ ବସି ରହିଥିଲି । ବର୍ଷା ପବନ ବେଳକୁବେଳ ବଢ଼ିବାକୁ ଲାଗିଲା । ଏଣୁ ସେହି ଗଛ ମୂଳରୁ ଅନ୍ୟତ୍ର ଯାଇ ପାରିଲି ନାହିଁ । ତିନ୍ତୁଛି, ଶୀତରେ କମ୍ପୁଛି, ମୋର ଲୁଗା ଦୁଇଖଣ୍ଡ ପତ୍ର ଘୋଡ଼ାଇ ରଖିଛି । ଲୁଗା ପାଲଟିଲେ ବା ଫଳ କ'ଣ ? ପୁଣି ତିନ୍ତିଯାଇ ଥାନ୍ତା । ମୁଁ ଥିବା ସ୍ଥାନରେ ଗୋଇଠିଏ ପାଣି । ଏ ସ୍ଥାନଟି ଶୁଖିଲା । ତୁମେମାନେ ଆସି ନଥିଲେ ମୋର ଆଜି ଜୀବନ ରହି ନଥାନ୍ତା । ଗ୍ରାମକୁ ଯାଆନ୍ତି ବା କିପରି ? ବାଟ ତ ମୋତେ ଜଣାନାହିଁ ।

ତୁମେ ଏଠାକୁ ଆସିଲ କିପରି ? ତୁମ ଘର କେଉଁ ଗ୍ରାମରେ ।

ମୁଁ ଏ ସ୍ଥାନର ନୁହେଁ, ମୋର ଦୁଃଖ କାହାଣୀ ଅନେକ ଅଛି । ଏବେ କହିବାକୁ ସମୟ ନାହିଁ । ତୁମମାନଙ୍କ ଦୟାରୁ ମୋର ପ୍ରାଣ ରହୁ । ଯେବେ ଦୟାକରି ମୋର ଦୁଃଖ କଥା ଶୁଣିବାକୁ ଇଚ୍ଛା କରିବ ତେବେ ନିଷ୍କପଟରେ ସବୁ କହିବି । ମୁଁ

ଦୁଃଖିନୀ, ପତିତା, ମୋତେ 'ଆହା' କରିବାକୁ ଜଗତରେ କେହି ନାହିଁ। ତୁମେ ମୋ କଥା ଶୁଣି ନଥିବାରୁ ନିକଟରେ ସ୍ଥାନ ଦେଇଛ। କେଜାଣି ଅନୁମତି ଦିଅ। ମୋର ଏତିକି ଭିକ୍ଷା, ମୋର ପ୍ରାଣ ରକ୍ଷାକର। ମୋର ବଞ୍ଚିବାକୁ ବଡ଼ ଇଚ୍ଛା। ବିଚରୀ କଇଁ କଇଁ ହୋଇ କାନ୍ଦି ଉଠିଲା।

ଏ କରୁଣ କ୍ରନ୍ଦନ ଶୁଣି ଯୁବକ ଦୁହେଁ ଭାବିଲେ ଏପରି ସମୟରେ ଏହାକୁ ଜୀବନ କାହାଣୀ ପଚାରି ବ୍ୟତିବ୍ୟସ୍ତ କରାଇବା ଉଚିତ ନୁହେଁ। ଏହାକୁ ସାହାଯ୍ୟ ଦେଇ ଗ୍ରାମକୁ ନେଇ ପହୁଞ୍ଚାଇ ଦେବା ହିଁ କର୍ତ୍ତବ୍ୟ। କହିଲେ ତୁମର କୌଣସି ଚିନ୍ତା ନାହିଁ। ଆମ ସହିତ ନିର୍ଭୟରେ ଗ୍ରାମକୁ ଯିବ। ଗ୍ରାମରେ ତୁମର କେହି ପରିଚିତ ବ୍ୟକ୍ତି ଅଛନ୍ତି କି ?

ନାହିଁ।

କେଉଁଠାରେ ରହିବ ?

ଜାଣେନା, ଗ୍ରାମରେ ପହଞ୍ଚିଲେ କାହାରି ଓଳିତଳ ଲୋଡ଼ିବି।

ତିନିଜଣଯାକ ନିର୍ବାକ ହୋଇ ଅନେକ କ୍ଷଣ ବସି ରହିଲେ।

କିଛିକ୍ଷଣ ଅତିବାହିତ ପରେ ଝଡ଼ର ପ୍ରକୋପ କମିଲା। କେବଳ ବୃଷ୍ଟି ଏକାବେଳକେ ବନ୍ଦହୋଇ ନଥାଏ। ଯୁବକ ଦୁହେଁ ଭାବିଲେ ଏହି ସମୟରେ ଏଠାରୁ ଯିବାଭଲ। ପଛକୁ ବେଶି ରାତ୍ର ହେବ। କେଜାଣି ପୁନର୍ବାର ଝଡ଼ ହୋଇପାରେ। ପାଦେ ପାଦେ ଚାଲିବା ଭଲ। ରମଣୀକୁ ଲକ୍ଷ୍ୟକରି କହିଲେ। ଉଠ ଆମ ସଙ୍ଗରେ ଗ୍ରାମକୁ ଯିବ। କୌଣସି ଭୟ ନାହିଁ। ଆମ ସଙ୍ଗରେ ବନ୍ଧୁକ ଅଛି। ଏ ସ୍ଥାନଟିରେ ହିଂସ୍ରଜନ୍ତୁର ଭୟ ଥିଲେ ମଧ୍ୟ ଆମ ଦୁହିଁଙ୍କର ପ୍ରାଣଥିବାଯାଏ ତୁମେ ନିରାପଦ।

ଆମେ ଦୁହେଁ ଆଗପଛ ହୋଇ ଚାଲିବୁ। ତୁମେ ମଧ୍ୟରେ ଚାଲ।

ନାନା ମୁଁ ତୁମ ଦୁହିଁଙ୍କ ପଛରେ ଚାଲିବି। ତୁମେମାନେ ନିକଟରେ ଥାଉଁ ଥାଉଁ କି ଡର ଅଛି ?

ତୁମେ ଜଙ୍ଗଲର କଥା ଜାଣିନାହଁ। ପଛରେ ଥିବା ଲୋକପ୍ରତି ବେଶି ବିପଦ। ବ୍ୟାଘ୍ର କେବଳ ପଛ ବ୍ୟକ୍ତିକୁ ଆକ୍ରମଣ କରେ। ଏ ଅନ୍ଧକାର ଜଙ୍ଗଲ ବାଟରେ ତୁମକୁ ପଛରେ ରଖି ଆମେ ଆପଣା ପ୍ରାଣ ଧରି ଆଗ ଚାଲିବୁ, ତାହା ଉଚିତ ନୁହେଁ।

ତୁମେ ମଝିରେ ଚାଲ। ରମଣୀ ସ୍ୱୀକୃତ ହେଲେ। ତିନିଜଣ ଆଗପଛ ହୋଇ ଚାଲିଲେ। ବର୍ଷା ଟପର ଟପର ପଡୁଅଛି। ଅନ୍ଧକାର ପୂର୍ବବତ୍। ଆଗପଛ କିଛି ଦିଶୁନାହିଁ। ନିକଟରେ କୌଣସି ବନ୍ୟଜନ୍ତୁ ଠିଆ ହୋଇଥିଲେ ମଧ ଜାଣିବାର ଉପାୟ ନାହିଁ। ବର୍ଷାର ଟପ୍‌ଟପ୍ ଶବ୍ଦ ହେତୁରୁ ଅନ୍ୟ ଶବ୍ଦ ମଧ କର୍ଣ୍ଣଗୋଚର ହେଉନଥାଏ। ଅଭ୍ୟସ୍ତ ପଥ, ଏବଂ ବିଜୁଳିର ଝଲକ ମଧରେ ମଧରେ ବାଟ ଦେଖାଇ ଦେଇଥାଏ। ଏଣୁ ଯେ କୌଣସି ପ୍ରକାରେ ଶଙ୍କିତ ଚିତ୍ତରେ ସତର୍କତା ଅବଲମ୍ବନକରି ବାଟ ଚାଲିଥାନ୍ତି। କଥାବାର୍ତ୍ତା ବନ୍ଦ ବୋଇଲେ ଚଳେ। ତେବେ ପାଟି ଫିଟାଇ ବନ୍ୟଜନ୍ତୁଙ୍କୁ ଭୟ ଦେଖାଇବା ଅଭିପ୍ରାୟରେ ମଝିରେ ଥରେ ଥରେ ଆଉ କେତେଦୂର ? ବୋଧହୁଏ ଅଳ୍ପ ଦୂର ଅଛି। ଏଣିକି ଭୟର କାରଣ ଗଲା, ଇତ୍ୟାଦି କଥା ଉଚ୍ଚାରଣ ହେଉଥାଏ ଏବଂ କେତେବେଳେ କେତେବେଳେ କଣ୍ଠ ପରିଷ୍କାର କରିବା ଛଳରେ କାଶନ୍ତି। ଜଙ୍ଗଲରେ କୌଣସି ବନ୍ୟଜନ୍ତୁ ସେ ଦିନ ଦେଖା ଯାଇ ନାହାନ୍ତି ବା ଭୟପ୍ରଦ କାରଣ ଉପୁଜି ନାହିଁ। ନିରାପଦରେ ଗ୍ରାମରେ ପହଞ୍ଚିଗଲେ। ଆଗବ୍ୟକ୍ତି ରମଣୀଙ୍କୁ ପଚାରିଲେ। ତୁମେ ଆମ ଘରେ ରହିବ।

ମୁଁ ନିଜର ପରିଚୟ ନଦେବାଯାଏ କାହାରି ଘର ଭିତରକୁ ପଶିବି ନାହିଁ। କୌଣସି ବାହାରିଆ ଘରେ ରଖାଇ ଦେଲେ ମୋର ବିଶେଷ ଉପକାର ହୁଅନ୍ତା। କୌଣସି ପଡ଼ିଆ ଘର ବା ଗୁହାଳ ଘରେ ରହିବାକୁ ମୋର ଆପତ୍ତି ନାହିଁ। ତୁମେ ଦୁହେଁ ମୋର ଜୀବନ ରକ୍ଷା କରିଛ, ଏହାହିଁ ମୋ ପକ୍ଷେ ଯଥେଷ୍ଟ। ତୁମେମାନେ ନଥିଲେ ମୁଁ ଆଜି ଅରଣ୍ୟରେ ମରିଥାନ୍ତି। ମୋର ମୃତ୍ୟୁକୁ ଭୟନାହିଁ। ମାତ୍ର ମୋର ଗର୍ଭରେ ଯେ ଶିଶୁଟି ଅଛି ତାକୁ ବଞ୍ଚାଇବା ନିମନ୍ତେ ମୋର ନିଜ ଜୀବନ ପ୍ରତି ଯାହା ମମତା, ତୁମମାନଙ୍କ ଦୟାରୁ ବଞ୍ଚିଗଲି। ପରେ ଘୋଡ଼ାଇ ଲୁଗା ଧରିଅଛି, ଚିନ୍ତି ନାହିଁ। ରାତ୍ରରେ କିଛି ଆଉ ଦରକାର ନାହିଁ। ହୁଏତ କାହାରି ଓଳିତଳେ ଶୋଇ ପଡ଼ିବି। ନା ନା ସେ କି କଥା, ଆମ ଘର ଭିତରକୁ ଯିବାର ଆପତ୍ତି ଥିଲେ, ବାହାରେ ଯଥେଷ୍ଟ ସ୍ଥାନ ଅଛି। ଚାଲ ନିର୍ଭୟ ଚିତ୍ତରେ ରାତିଟା କଟାଇବ। କାଲି ସକାଳ ପାହିଲେ ଦେଖାଯିବ।

ଜଣେ କହିଲେ ତୁମ ନିମନ୍ତେ କିଛି ଖାଦ୍ୟଦ୍ରବ୍ୟ ଓ ଢ଼ାଳେ ପାଣି ଆଣି ଦେବି, ଜଳଖିଆ କରି ନିଶ୍ଚିନ୍ତରେ ଏଠାରେ ଶୋଇପଡ଼ିବ। କିଛି ଭୟନାହିଁ। କେହି ମଧ କିଛି ଜାଣିବନାହିଁ।

ନା ନା କ୍ଷମା କର, ଆଜି ଆଉ ମୁଁ କିଛି ଖାଇବି ନାହିଁ। ସୂର୍ଯ୍ୟାସ୍ତ ସମୟରେ ଜଳଖିଆ ଖାଉଛି, ବଡ଼ କ୍ଳାନ୍ତି ବୋଧ ହେଉଛି। ତୁନି ହୋଇ ଶୋଇପଡ଼ିବି। ଯାହା ହେଲା। ତାହା ଯଥେଷ୍ଟ। ଆଉ ଆୟୋଜନ କଲେ ମୋର ବିଶେଷ କଷ୍ଟ ହେବ। କ୍ଷମାଦିଅ।

ଆଚ୍ଛା ତୁମର ଯେବେ ଇଚ୍ଛା ନାହିଁ। ବଳାଇବା ଦରକାର କଣ?

ବନ୍ଧୁଦ୍ୱୟ ଯିବାକୁ ଉଦ୍ୟତ ହେଲାବେଳେ ରମଣୀ ପୁଣି କରୁଣ ସ୍ୱରରେ କହିଲେ, ମୋର ଆଉ ଗୋଟିଏ ଜଣାଣ।

କଣ କହିବାର ଅଛି ନିର୍ଭୟରେ କୁହ।

ମୁଁ ଏଠାରେ କାଲି ସକାଳଯାଏ - ନା ପାହାନ୍ତାଯାଏ ଶୋଇବି। ମତେ ଗୋଟିଏ ସ୍ଥାନ କହିଦିଅ, ମୁଁ ବଡ଼ି ଭୋର ଠୁଁ ଉଠି ସେଠାକୁ ଯିବି, ତୁମ ଦୁହିଁଙ୍କି ମୋର ଜୀବନ କାହାଣୀ କହିବି ତାହା ପ୍ରକାଶ କଲେ ମୋର ଅନେକ ଦୁଃଖ ଲାଘବ ହେବ। ତୁମେ ମୋର ଦୁଃଖ କାହାଣୀ ଶୁଣି ସାରିଲାରୁ ମୋତେ ଯେଉଁ ଉପଦେଶ ଦେବ ତାହା ମୋର ଶିରୋଧାର୍ଯ୍ୟ। ତୁମେ ଦୁହେଁ ତ ମୋର ଜୀବନ ରକ୍ଷା କରିଛ। ତୁମ ନିକଟରେ ମୋର ଗୋପନ କରିବାର କଣ ଅଛି? ତୁମେମାନେ ମୋକଥା ନଶୁଣିଲେ ମୁଁ ଏଠାରୁ ଅନ୍ୟସ୍ଥାନକୁ ଚାଲିଯିବି।

ତୁମର ଦୁଃଖ ପୂର୍ଣ୍ଣ କଥା ଶୁଣି ସମଗ୍ର ବିଷୟ ଜାଣିବାକୁ ମନ ବ୍ୟାକୁଳ ହେଉଅଛି। କାଲିକି କାହିଁକି, ଆଜି ତୁମେ କ୍ଳାନ୍ତ ହୋଇ ନଥିଲେ ରାତ୍ର ଉଜାଗର ହୋଇ ତୁମ କଥା ଶୁଣିବାକୁ ଆମର ଆପତ୍ତି ନଥିଲା। ଆମର ଯେତେ ଗୁରୁତର କାର୍ଯ୍ୟ ଥିଲେ ମଧ୍ୟ ତୁମ କଥା ନଶୁଣି ଅନ୍ୟତ୍ର ଯିବୁନାହିଁ। କିମ୍ବା ଅନ୍ୟ କୌଣସି କାର୍ଯ୍ୟରେ ହାତ ଦେବୁନାହିଁ। ଏହାକହି ସେହି ଘରଠାରୁ ଉତ୍ତର ଦିଗକୁ ଅଳ୍ପ ଦୂରରେ ଥିବା କ୍ଷୁଦ୍ର ଜଙ୍ଗଲ ଯୋଡ଼କୁ ଯାଇ ସେ ଠାରେ ସେ ଅପେକ୍ଷା କରିବାକୁ ସମଝାଇ ଦେଲେ, ଏବଂ କହିଲେ -

ସାମାନ୍ୟ ଜଙ୍ଗଲ ଥିଲେ ମଧ୍ୟ କୌଣସି ଭୟର କାରଣ ନାହିଁ। ଯୋଡ଼ ଖଣ୍ଡିରେ ବଡ଼ ବଡ଼ ପଥର ଅଛି। ଗଛ ଅଛି, ଗଛତଳେ ଅପେକ୍ଷା କରିଥିବ। ସେ ସ୍ଥାନଟି ବୋଇଲେ ଚଳେ। ସକାଳେ ସେଠାକୁ ସାଧାରଣତଃ କେହି ଯାଆନ୍ତି ନାହିଁ। ସେଠାରେ ଯାଇ ଅପେକ୍ଷା କରିଥିବ। ଆମେ ଯଥା ସମୟରେ ଉପସ୍ଥିତ ହେବୁ।

ଦୁଇ ବନ୍ଧୁ ସେଠାରୁ ଚାଲିଗଲେ। ରମଣୀ ଝଡ଼ବର୍ଷା ଏବଂ ଦୁଇ ବନ୍ଧୁଙ୍କ ଦୟା ଓ ସାହାଯ୍ୟକଥା ଭାବୁ ଭାବୁ ଶୋଇ ପଡ଼ିଲା।

॥ ଦୁଇ ॥

ବନ୍ଧୁ ଦ୍ୱୟ ରମଣୀକୁ ଆଶ୍ରୟ ଦେଇ, ସେ ସ୍ଥାନ ତ୍ୟାଗ କଲେ ସତ। ମାତ୍ର ନିଷ୍ଠିତ ମନରେ ନୁହେଁ, ଘୋର ବର୍ଷାରେ, ଅରଣ୍ୟରେ ରାତ୍ରରେ ଅପରିଚିତା ଜଣେ ଭଦ୍ର ରମଣୀକୁ ଅସହାୟ ଓ ବିପଦଗ୍ରସ୍ତ ଦେଖିଲାବେଳୁ ସେ ଦୁହିଁଙ୍କ ମନ ସଂଦେହ ଦୋଳାରେ ଆନ୍ଦୋଳିତ ହେଉଥିଲା। ନିଶ୍ଚୟ ଭଲ ଘରର ଝିଅ। ଅଶିକ୍ଷିତା ମଧ ନୁହନ୍ତି। କଥାବାର୍ତ୍ତା ସରଳ ଓ ନିଷ୍କପଟ। ସହାନୁଭୂତିଶୀଳା ଭିକାରୁଣୀ ସହୃଦୟତାର ପରିଚୟ ପାଇଲେ ଆପଣାର ହୃଦୟ ବୋଲି ସମସ୍ତ ଆତ୍ମବୃତ୍ତାନ୍ତ ବ୍ୟକ୍ତ କରି ହୃଦୟର ଦୁଃଖ ଜ୍ୱାଳାରୁ ମୁକ୍ତିଲାଭ କରିବାକୁ ତତ୍‌ପର; ଏପରିକି ରମଣୀଟି କିଏ ? କି ହେତୁରୁ ବିପତ୍ତି ପସରା ମଥାରେ ବୋହି ଗୃହତ୍ୟାଗିନୀ ହୋଇ ଅଛି ? ଏହି ଚିନ୍ତା ଦୁଇ ବନ୍ଧୁଙ୍କ ହୃଦୟକୁ ଆନ୍ଦୋଳିତ କରିବାକୁ ଲାଗିଲା। ସେହି ସ୍ଥାନ ତ୍ୟାଗ କଲେ ସତ। ପୁଣି ଏକ ସ୍ଥାନରେ ବସି ଏ ବିଷୟରେ ଆଲୋଚନା କରିବାକୁ ଇଚ୍ଛାକଲେ। ଦୁହିଁଙ୍କ ଘରବାଡ଼ି ଯୋଡ଼ିକ ପରସ୍ପର ସଂଲଗ୍ନ ବୋଇଲେ ଚଳେ। ଦୁହେଁ ଘରକୁ ଯାଇ ଲୁଗା ପାଲଟି ପୁଣି ଏକାଠି ଆସି ବସିଲେ, ଏବଂ ଗତ ଘଟଣା ଗୁଡ଼ିକର ଆଲୋଚନା କରିବାକୁ ଲାଗିଲେ। ଦୁହେଁ ବାଲ୍ୟ ସହଚର ବନ୍ଧୁ, ଆତ୍ମୀୟ ଶିକ୍ଷିତ। ସମବୟସ୍କ ଭଦ୍ର ସନ୍ତାନ। ଖାଇବା ପିନ୍ଧିବାକୁ ଅଛି। ଜମିବାଡ଼ି ଅଛି। ଉଭୟେ ଅଭାବଗ୍ରସ୍ତ ନୁହନ୍ତି। ପାଠ ପଢ଼ାଛାଡ଼ି ଗୃହ କର୍ମ ଶିକ୍ଷାରେ ବ୍ୟସ୍ତ। ଖମାର ଚାଷ ବ୍ୟବସାୟ ଦେଖନ୍ତି। ପିତାମାତାଙ୍କର ସାହାଯ୍ୟ ନିମନ୍ତେ ଯାହା ପ୍ରୟୋଜନ ତାହା କରିବାରେ ତ୍ରୁଟି ନାହିଁ। ଏଣୁ ତାତମାନଙ୍କର କଲ୍ୟାଣଭାଜନ, ଗ୍ରାମର ଲୋକେ ମଧ ଏ ଦୁହିଁଙ୍କୁ ସ୍ନେହ କରନ୍ତି।

ଦୁହେଁ ଯୁବକ। ଅବିବାହିତ। ଅବିବାହିତ ଯୁବକମାନଙ୍କୁ କୌଣସି ଗୋଟିଏ ଦୋଷ ଦେବାକୁ ଖଳ ଲୋକମାନଙ୍କ ଜିହ୍ୱା ହଳଚଳ ହେଉଥାଏ। ଅବିବାହିତ ଯୁବକମାନଙ୍କ ଚରିତ୍ର ଘଟିତଦୋଷ କଳଙ୍କ ଶ୍ରବଣ କରିବାକୁ ଖଳମାନେ ଶ୍ରୁତି ଡ଼େରି ରହିଥାନ୍ତି। ମାତ୍ର ଏ ଦୁଇ ବନ୍ଧୁଙ୍କ ଦୋଷ ବା କଳଙ୍କ କୌଣସି ଖଳ ବ୍ୟକ୍ତିର ମୁଖ ଉଦ୍‌ଗୀରଣ କରିପାରି ନାହିଁ କିମ୍ବା କୌଣସି କର୍ଣ୍ଣ ଏହାଙ୍କର ଦୋଷ ଦୁର୍ନୀତି ଶ୍ରବଣ କରିନାହିଁ।

ଅବିବାହିତ ଯୁବକ ନିର୍ଭୀକ। ନିର୍ଭୟ ଚିତ୍ତରେ ଆତ୍ମମତ ପ୍ରକାଶ କରିବାକୁ ଯେପରି ପଟୁ। ପ୍ରୟୋଜନାନୁଯାୟୀ ପରହିତ ନିମନ୍ତେ ଶାରୀରିକ ଶକ୍ତି ବ୍ୟୟ କରିବାରେ କୁଣ୍ଠିତ ନଥିଲେ। ବନ୍ଧୁଦ୍ୱୟ ଭୟଶୂନ୍ୟ। ଅନ୍ଧକାର ଶ୍ମଶାନ, ଅରଣ୍ୟ ଏ ଦୁହିଁଙ୍କ ହୃଦୟକୁ ଟିକିଏ ହେଲେ ଦବାଇ ପାରେ ନାହିଁ। ଏ ଦୁଇଙ୍କ ପ୍ରତି ପଶା ତାସ୍ ପ୍ରଭୃତି ଅଳସୁଆଙ୍କ ଖେଳ ଅପେକ୍ଷା ବନଭ୍ରମଣ ଓ ଶିକାର ବେଶି ଆମୋଦଜନକ। ଓ ସ୍ପୃଟୀପ୍ରଦ ବୋଲି ମନେହୁଏ। ଜୀବ ହିଂସାଟାକୁ ଯେଉଁମାନେ ଘୃଣା କରନ୍ତି। ସେମାନେ ମୃଗୟାକୁ ନିନ୍ଦା କରନ୍ତି। ସନ୍ଦେହ କରନ୍ତି ନାହିଁ। ମାତ୍ର ଏ ଦୁହେଁ ମନୁଷ୍ୟ ପ୍ରତି ମନୁଷ୍ୟର ହିଂସାଟାକୁ ଅତ୍ୟନ୍ତ ଜଘନ୍ୟ ଓ ଘୃଣା ମନେକରୁଥିଲେ। ମାତ୍ର ମନୁଷ୍ୟର ପ୍ରୟୋଜନୀୟ ମୃଗୟା ଯେ ଦୂଷହଣୀୟ ଏହା ସେମାନଙ୍କ ମନରେ ସ୍ଥାନ ପାଇ ନଥିଲା। ଗୃହରେ ଚୁନି ହୋଇ ବସି ପର କୁତ୍ସା ପରନିନ୍ଦା କରିବା ବା ଶୁଣିବା ଅପେକ୍ଷା ଅରଣ୍ୟରେ ଘେରାଏ ବୁଲି ଆସିବା ଗୋଟାଏ ଖାଦ୍ୟ ପଦାର୍ଥ ସଂଗ୍ରହ କରି ଆଣିବାଟା ସତ୍‌କାର୍ଯ୍ୟ ବୋଲି ମନେ କରନ୍ତି। କେହି କେହି ମୃଗୟାର ନିନ୍ଦାକଲେ ଶକୁନ୍ତଳାରୁ ପଦେ ଶ୍ଳୋକ ଉଚ୍ଚାରଣ କରି ମୃଗୟାର ପ୍ରଶଂସା କରନ୍ତି ଓ କହନ୍ତି-

"ମୈ ତବ ବ୍ୟସନଂ ବଦନ୍ତି ମୃଗୟା ମିଦୃଗ୍ ବିନୋଦଃ କୁତଃ।" ଅବସର ପାଇଲେ ବନ୍ଧୁକ ଧରି ଘେରାଏ ବନ ଭ୍ରମଣ କରି ଆସନ୍ତି। ଆଜି ଶିକାର ଉଦ୍ଦେଶ୍ୟରେ ଟିକିଏ ଦୂରକୁ ଚାଲିଯାଇଥିଲେ। ଫେରୁ ଫେରୁ ବିଳମ୍ବ ହେଲା। ଫେରିଲାବେଳେ ଝଡ଼ ବୃଷ୍ଟିର ବାଧାପାଇ ବୃକ୍ଷମୂଳରେ ଆଶ୍ରୟ ନେଲେ। ଏବଂ ବିପନ୍ନା ରମଣୀକୁ ସାହାଯ୍ୟ ଦେଇ ଗ୍ରାମକୁ ନେଇ ଆସି ଗୃହର ନିଭୃତ ସ୍ଥାନରେ ଆଶ୍ରୟ ଦେଲେ। ଏ ଦୁହିଁଙ୍କର ଗୋଟିଏ ଦିନର କାର୍ଯ୍ୟ ଶେଷ ହେଲା; ଦୁଇ ବନ୍ଧୁ ଗୃହ ବାରଣ୍ଡାରେ ବସି ଗତ କଷ୍ଟମାନଙ୍କର ଆଲୋଚନାରେ ବ୍ୟସ୍ତ। ଗତ ବିପତ୍ତିଟା ସେମାନଙ୍କୁ ସୁଖାବହ ମନେହେଉଥିଲା। ବାସ୍ତବିକ୍ କାପୁରୁଷପ୍ରତି ଗତ ବିପତ୍ତି ଯେପରି ହୃତ୍‌କମ୍ପପ୍ରଦ ଏବଂ ଭବିଷ୍ୟତ୍ ବିପତ୍ତିଚିନ୍ତା ତଦ୍‌ପେକ୍ଷା ଭୀତପ୍ରଦ ଓ ଦୁର୍ବିସହ ବୀର ପ୍ରତି ବିପତ୍ତି ଅନିବାର୍ଯ୍ୟ ନିତ୍ୟ ଘଟଣା। ସେଥିରେ ସେ ଭୀତ ହୁଏ ନାହିଁ। ବରଂ ସେଥିରୁ ଉଦ୍ଧାର ପାଇବା ଚେଷ୍ଟା ସୁଖକର ମଣେ ଏବଂ ଉଦ୍ଧାର ଉତ୍ତାରୁ ତାର ଆହ୍ଲାଦର ସୀମା ନଥାଏ। ଜୀବନରେ କାପୁରୁଷ ଅନେକ ଥର ମରେ। କିନ୍ତୁ ବୀର ମରେ ଥରେ। ଏ କଥାଟା ମିଥ୍ୟା ବୋଲି କେହି ଉଡ଼ାଇ ନେଇ ନପାରେ ଭୀରୁ ମନେ କରନ୍ତା, ଆରେ, ବାପରେ, କାଳ ବୈଶାଖ ଉପର ବେଳା ଝାଞ୍ଜିରେ ମୁଁ ଆଉ କେବେ ବାହାରିବି

ନାହିଁ। ଯେଉଁ ଝଡ଼ ବୃଷ୍ଟି ଅନ୍ଧକାର ଭାଗ୍ୟକ୍ରମେ ମୋ ମୁଣ୍ଡରେ ନପଡ଼ିଲା। ଗଛ ମାଡ଼ି ନପଡ଼ିଲା, ଆଜି ପୈତୃକ ଜୀବନ ଅନାୟାସରେ ଯାଇଥିଲା ଓ କାନ ମୋଡ଼ି ହେଲି ଆଉ କେବେ ଏପରି ମଉଜରେ କେଉଁଆଡ଼େ ବହାରିବି ନାହିଁ, ମାତ୍ର ବନ୍ଧୁଦ୍ୱୟ ଆହ୍ଲାଦରେ ଏହି ଝଡ଼ ବୃଷ୍ଟି। ବଜ୍ରପାତ, କରକା ବୃଷ୍ଟି କଥା ଭାବୁ ଅଛନ୍ତି। ସେମାନେ ଭାବିଲେ ଘଟଣା କ୍ରମେ ବିଳମ୍ବ ହୋଇ ନଥିଲେ। ସେହି ଅସହାୟ ରମଣୀର କି ଦୁର୍ଦ୍ଦଶା ହୋଇ ନଥାନ୍ତା। ଅନ୍ଧକାର ବାଟଅଜଣା, ଗ୍ରାମର ଦିଗ ଜଣାନାହିଁ। ଅରଣ୍ୟ ହିଂସ୍ର ଭୟ, ନିଶ୍ଚିତ ପ୍ରାଣ ହରାଇଥାନ୍ତା। ଶୀତରେ ଥରି ଥରି ଭୟରେ ଆକୁଳ ହୋଇ ପ୍ରାଣ ହରାଇଥାନ୍ତା, ମନୁଷ୍ୟ ଉପରେ ଏପରି ନାରୀର ବିପତ୍ତି ମଧ୍ୟ ଉପସ୍ଥିତ ହୁଏ। ଜଣେ କହିଲେ ଆହା ଆମେ ଦୁହେଁ ସେଠାରେ ଉପସ୍ଥିତ ହୋଇ ନଥିଲେ ଗୋଟାଏ ନାରୀର ପ୍ରାଣ ଯାଇଥାନ୍ତା ତାହା କେବଳ ନୁହେଁ ସେହି ନାରୀପୁଣି ଗର୍ଭବତୀ ଥିବାର ସେ ପ୍ରକାଶ କରିଛି। ତେବେ ଯୋଡ଼ିଏ ପ୍ରାଣୀର ବିନାଶ ଘଟିଥାନ୍ତା, ଆମର ସାମାନ୍ୟ କଷ୍ଟ ତହିଁର ତୁଳନାରେ ତ କିଛି ନୁହେଁ।

ଭାଇ ଆମ ଜୀବନରେ ତ ଏପରି ଝଡ଼ ବର୍ଷା କେତେ ଘଟିଅଛି, ମାତ୍ର ଆଜିର ଝଡ଼ ବର୍ଷା ଆମ ଜୀବନର ଗୋଟାଏ ପ୍ରଧାନ ଘଟଣା। ଏପରି ଦୁଃଖ ଗ୍ରସ୍ତ ବ୍ୟକ୍ତିକୁ ବଞ୍ଚାଇବା ନିମନ୍ତେ ଏପରି ବା ଏହାଠାରୁ ଅଧିକ କଷ୍ଟ ଓ ବିପତ୍ତି ପଡ଼ିଲେ ମଧ୍ୟ ପରୁଆଏ କରେ କିଏ। ବିଚାରୀକୁ ଜଙ୍ଗଲରୁ ଉଦ୍ଧାର କରି ଆଣିଲେସତ ମାତ୍ର ତାର ଦୁଃଖ ଆହୁରି ଅଛି ବୋଲି ମନେହୁଏ। ତା କଥାରୁ ସ୍ପଷ୍ଟ ଜଣାପଡୁଛି। ତାର ବୃତ୍ତାନ୍ତ ଆମେ କିଛି ହିଁ ଜାଣିପାରିନାହୁଁ। ତଥାପି ସେ ଯେ ଅତ୍ୟାଚରିତା, ଏଥିରେ ମୋର ସଂଦେହ ନାହିଁ। ତାଠାରୁ ସବୁକଥା ଶୁଣି ତାର ଉପଯୁକ୍ତ ସାହାଯ୍ୟ କରି ନପାରିଲେ ତାକୁ ଅରଣ୍ୟରୁ ଉଦ୍ଧାର କରିବାର ଅର୍ଥ ଯେ କିଛି ନୁହେଁ।

କାଲି ସକାଳେ ତା ମୁହଁରୁ ସମସ୍ତ ବୃତ୍ତାନ୍ତ ଶୁଣିଲା ଉତ୍ତାରୁ ଯଥା ବ୍ୟବସ୍ଥା ଅବଶ୍ୟ କରାଯିବ। ଦେଖୁଛ ଆମେ ତାର ବୃତ୍ତାନ୍ତ ଓ ରହସ୍ୟ ନ ଜାଣିବା ଯାଏ ଘର ଭିତରକୁ ଯିବ ନାହିଁ। କିମ୍ୱା ଆମ୍ଭେ ଯାଚିବା ପଦାର୍ଥ ମଧ୍ୟ ଗ୍ରହଣ କରିବ ନାହିଁ। ନିଷ୍ଟୟ ମନରେ ତାର ଦୃଢ଼ତା ଅଛି।

ରାତ୍ର ଅଧିକ ହେଲା, ଶୋଇବା ବ୍ୟବସ୍ଥା କରାଯାଉ

ଉଭୟେ ଆପଣା ଆପଣା ଗୃହାଭ୍ୟନ୍ତରକୁ ପ୍ରସ୍ଥାନ କଲେ।

## ତିନି

ରମଣୀ ଶ୍ରାନ୍ତ କ୍ଳାନ୍ତ ହୋଇ ପଡ଼ିଥିଲା । ବିଋରୀ ଏକାକିନୀ ଅନ୍ଧକାର ପୂର୍ଣ୍ଣ ନିର୍ଜନ ବଖରାଟିରେ ନିଶ୍ଚିନ୍ତରେ ଶୋଇ ପଡ଼ିଲା । ରାତ୍ର ଥିଲା ପାହାନ୍ତା ପୂର୍ବରୁ ସହସା ତାର ନିଦ୍ରାଭଙ୍ଗ ହେଲା । ସକାଳ ହେବା କେତେ ବାକି ଅଛି ତହିଁର ବିଋର ନାହିଁ । ଅନ୍ଧାରରେ ଝରଣାକୁ ଯିବାଟା ନିରାପଦ କି ନୁହେଁ, ସେଥିର ବିଋର ନାହିଁ । ମନେଥିଲା ସକାଳୁ ଯାଇ ଝରଣା ଠାରେ ଦୁଇ ବନ୍ଧୁଙ୍କୁ ଅପେକ୍ଷା କରିବାକୁ ହେବ । ତତ୍‌ପର ହୋଇ ଲୁଗା ଦୁଇଖଣ୍ଡ ବୋକଋବାନ୍ଧି ଗୃହତ୍ୟାଗ କଲା । ନିର୍ଦ୍ଦିଷ୍ଟ ସ୍ଥଳ ଅଭିମୁଖରେ ପ୍ରସ୍ଥାନ କଲା । ଅରଣ୍ୟରେ ପ୍ରବେଶ କଲା । ତଥାପି ମନରେ ଶଙ୍କା ନାହିଁ । ଯେହେତୁ ଗତକାଲି ଶୁଣିଥିଲା ଯେ ଝରଣା ନିକଟ ଜଂଗଲରେ କୌଣସି ଆଶଙ୍କାର କାରଣ ନାହିଁ । ତାର ବିଶ୍ୱାସ, ଯେଉଁମାନେ ତାକୁ ମହାବିପତ୍ତିରୁ ରକ୍ଷା କରି ଅଛନ୍ତି, ସେମାନେ ତାକୁ ପୁଣି ବିପତ୍ତିଜନକ ସ୍ଥାନକୁ ଠେଲି ଦେବେ ନାହିଁ । ନିର୍ଭୟରେ ଋଲିଲା ।

ନିର୍ଦ୍ଦିଷ୍ଟ ସ୍ଥଳ ଗୃହଠାରୁ ଆନୁମାନିକ ଅଧାମାଇଲ ବା କିଛି କମ୍ ହେବ । ବାଟରେ ଓ ଝରଣା ନିକଟରେ ଜଙ୍ଗଲ । ସାଧାରଣତଃ ହିଂସ୍ର ପଶୁ ଦେଖା ଯାଆନ୍ତି ନାହିଁ ସତ ମାତ୍ର ତାହା ବୋଲାଯାଇ ନପାରେ । ସ୍ଥାନଟି ମନୋରମ, ଅଦୂରରେ ପ୍ରପାତ, ପ୍ରପାତର ବାରି କଳକଳ ନାଦରେ ଶିଳା ବନ୍ଧୁର ଶଯ୍ୟାରେ ବହିଯାଉଛି । ବିଋରୀ ସ୍ନାନାଦି ନିତ୍ୟକର୍ମ ସମାପନାନ୍ତେ ପୂର୍ବ ଆଡ଼କୁ ମୁଖକରି ଗୋଟିଏ ପଥର ଉପରେ ତୂନି ହୋଇ ବସିଅଛି । ପାହାନ୍ତା ହେଲା । ସମସ୍ତେ ନିସ୍ତବ୍ଧ । ବୃକ୍ଷଟିମାନ ଗୋଟି ଗୋଟି ହୋଇ ଦେଖାଯାଉଅଛନ୍ତି । ଗତ ରାତ୍ରି ବୃଷ୍ଟି ଦ୍ୱାରା ସମସ୍ତେ ପରିତୃପ୍ତ ଓ ଆହ୍ଲାଦିତ ପରି ଦେଖାଯାଉଅଛନ୍ତି । ଅରଣ୍ୟକୁ ପୁଷ୍ପ ସୌରଭ ଆମୋଦିତ କରୁଅଛି । ପକ୍ଷୀମାନେ ଗାନ ଆରମ୍ଭ କଲେ । ପ୍ରାକୃତିକ ସୁଶ୍ରାବ୍ୟ ଧ୍ୱନି, ବନ୍ୟପୁଷ୍ପ ସୌରଭ ଉଷା କାଳରେ ନିର୍ଜନ ଗହନରେ ଯେଉଁ ବ୍ୟକ୍ତିର ମନକୁ ଅପୂର୍ବ ଭାବ ରସରେ ଆପ୍ଳୁତ ନକରେ ? ମାତ୍ର ଯାହାର ହୃଦୟ ଶୋକାନଳରେ ଦଗ୍‌ଧୀଭୂତ ହେଉଥାଏ ତା ପ୍ରତି ଏ ସବୁ ପିତା । ବିଋରୀ ତୂନି ହୋଇ ବସିଥିଲା । କେଜାଣି ଏହି ଦୃଶ୍ୟ-ଧ୍ୱନି-ସୌରଭ ତା ମନକୁ କେତେ ଦିନ କେତେ ଦୂର ଆକର୍ଷଣ ଓ ମୁଗ୍‌ଧ କରୁଥିଲା, କୁହାଯାଇ ନପାରେ । ଜଳ ଆଞ୍ଜୁଳାଏ ଧରି କହିଲା, ମା କଳୁଷ ନାଶିନୀ ନିର୍ଝରିଣୀ ସମସ୍ତେ ମତେ ତ୍ୟାଗ କଲେ ମଧ ତୁ-କି-ମୋତେ ତ୍ୟାଗ କରିବୁ । ମୁଁ ପାପିନୀ ବୋଲି

ମନେ କି ତୁ ତୋର ଦୟାରୁ ବଞ୍ଚିତ କରିବୁ ? କେବେ ନୁହେଁ ଟିକିଏ ଜଳପାନ କଲା, ପୁଣି ତୁନି ହୋଇ ବସିଲା ।

କ୍ରମେ ପୂର୍ବାକାଶ ରକ୍ତାଭ ଧାରଣ କଲା । ଦେଖୁ ଦେଖୁ ସାନ୍ଦ୍ର ସିନ୍ଦୁର ବର୍ଣ୍ଣ ବାଳ ଭାନୁର ଉଦୟ । କେବଳ ରକ୍ତାଭ ବୋଇଲେ ଯଥେଷ୍ଟ ନୁହେଁ । ସ୍ୱର୍ଣ୍ଣ କାର, ବିଶୁଦ୍ଧ ହାଟକ କୋଇରେ ତରଳାଇବା ବେଳେ ଟାଙ୍ଗଣା ପ୍ରକ୍ଷେପ କରି ଯେଉଁ ଗୋଳାକାର ତରଳ ହାଟକ ଛଦି ଦର୍ଶନ କଲା । ହାତ ଯୋଡ଼ି ମୁଣ୍ଡରେ ଲଗାଇ ପ୍ରଣାମ କଲା ଏବଂ କହିଲା - ପ୍ରଭୁ ତୋତେ ଧର୍ମରାଜ ବୋଲି କହନ୍ତି । ତୁ ପାପ ପୁଣ୍ୟର ସାକ୍ଷୀ ତୋତେ କିଛି ହିଁ ଅଗୋଚର ନାହିଁ । ମୁଁ ପାପିନୀ ବୋଲି ମନେ ପ୍ରଭୁ ତୁ ତ୍ୟାଗ କରି ନାହୁଁ । କରିବୁ ନାହି ବି । ପ୍ରଭୁ ବର ଦେ ମୋର ଗର୍ଭସ୍ଥ ଶିଶୁ ତୋହର ତୁଲ୍ୟ ତେଜନୀୟ ଓ ବଳଶାଳୀ ହେଉ । ମୋର ପାପ ଭାରା ନାଶକରୁ । ଏକ ଦୃଷ୍ଟିରେ ଚହିଁ ଥିଲା । ବିମ୍ବ ଝଟ ଝଟ ଘୂର୍ଣ୍ଣାୟମାନ ହେଲା ପରି ଦୃଶ୍ୟ ହେଲା । ଆଉ ଅନାଇ ପାରିଲା ନାହିଁ । ପୁଣି ନମସ୍କାର କରି ଚିନ୍ତା ମଗ୍ନ ହୋଇ ବସି ରହିଲା ।

ଯୁବକ ଦୁହେଁ ଦେଖିଲେ ରମଣୀ ପୂର୍ବକୁ ମୁଖକରି ଧ୍ୟାନ ମଗ୍ନହୋଇ ବସିଅଛି । କବରୀ ଭାରଉନ୍ମୁକ୍ତ ସ୍ନାନଜଳ ଶୁଷ୍କ ହୋଇ ନଥିବାରୁ ବନ୍ଧନ କରିନାହିଁ । କିମ୍ବା ଓଢ଼ଣା ପକାଇ ନାହିଁ । କେଶ ବିନ୍ୟାସ ହୋଇନାହିଁ । କେଶରାଶି ଅର୍ଦ୍ଧ କପୋଳ ଆବୃତ କରିଛି । ମୁଖରେ ଦୁଃଖ ଓ ଚିନ୍ତାର ଛାୟା ପାତ ପଲକେ ପଲକେ ଦେଖା ଯାଉଥିଲେ ମଧ ରମଣୀର ଶୁଭ୍ର ଲାବଣ୍ୟ ଜ୍ୟୋତିକୁ ନିଷ୍ପ୍ରଭ କରି ପାରୁନାହିଁ । ରମଣୀ ସୁନ୍ଦରୀ ଯୁବତୀ ବୟସ ଅଠର ଉଣେଇଶରୁ ଅଧିକ ନୁହେଁ ପ୍ରାୟ । ମୁଖରେ ଅବୟବରେ ଅଳଙ୍କାର କିଛି ନଥିଲା । ଏଣୁ ଦୁଇ ବନ୍ଧୁ ତାକୁ ବିଧବା ଜାଣିଲେ । ଦୁହେଁ ତା ନିକଟରେ ଉପସ୍ଥିତ ହେଲେ । ରମଣୀ ଗାତ୍ରୋତ୍ତଳନ କରି ନିଜ ମସ୍ତକରେ ଦଣ୍ଡାୟମାନ ହେଲା । ଯୁବକ ଦୁହେଁ ତାର ଦୂରାବସ୍ଥା ଗ୍ରସ୍ତ ମୁଖ ଛବିକୁ ଅନାଇ ରହିଲେ । କାହାରିଠାରୁ କିଛିକ୍ଷଣ ବାକ୍ୟ ସ୍ଫୁରିଲା ନାହିଁ । କିଏ ପ୍ରଥମେ ବାକ୍ୟାଳାପ ଆରମ୍ଭ କରିବେ । ଏହି ଚିନ୍ତା ପ୍ରତ୍ୟେକଙ୍କ ମନକୁ ଆନ୍ଦୋଳିତ କରୁଥିଲା । ଜଣେ ଯୁବକ କହି ପକାଇଲେ ଆଉ ଟିକିଏ ଉପର ଆଡ଼କୁ ଯିବା । ହରେ ଅପେକ୍ଷା ନକରି ଉତ୍ତର ମୁଖରେ ଅଗ୍ରସର ହେଲେ । ଅନ୍ୟ ଯୁବକ ମଧ ବିନା ବାକ୍ୟ ବ୍ୟୟରେ ପିଛା ଧରିଲେ । ରମଣୀ ମଧ ବିନା ଆପତ୍ତିରେ ଯନ୍ତ୍ର ଚାଳିତ ପରି ସେ ଦୁହିଁଙ୍କର ଅନୁକରଣ କଲା । ଅଳ୍ପ ଦୂରରେ ଘନଛାୟା ବିଶିଷ୍ଟ ଶିଆରୀ ଲତା ତଳରେ ଯୁବକ ଦୁହେଁ ବସି

ପଡ଼ିଲେ। ରମଣୀକୁ ବସିବା ନିମନ୍ତେ ଇଙ୍ଗିତଦେଲେ ଏବଂ ବିନା ଭୂମିକାରେ କହିପକାଇଲେ ତୁମ ବକ୍ତବ୍ୟ ପ୍ରକାଶ କର। ଆମେ ଦୁହେଁ ଅବହିତ ହୋଇ ଶୁଣିବୁ। ଏବଂ ଯାହା ଆମର କର୍ତ୍ତବ୍ୟ ତାହା ନିଷୟ କରିବୁ। ରମଣୀ ଏହି ବାକ୍ୟରେ ଆଶ୍ୱସ୍ତ ହୋଇ ନିଜର ଜୀବନ କାହାଣୀ ଅଧ୍ୟାୟ ଆରମ୍ଭ କଲେ।

ଆତ୍ମୀୟ ସହିତ, ବନ୍ଧୁ ସହିତ, ପରିଚିତ, ବହୁ ପରିଚିତ ବ୍ୟକ୍ତିକୁ ଯେପରି ଲୋକ ମନ ଫିଟାଇ ଆପଣା କଥା କହିପାରେ, ରମଣୀ ସେହିପରି କହିବାକୁ ଆରମ୍ଭ କଲେ। ଭୟ, ସଂକୋଚ, ଲଜ୍ଜା, କିଛି ନାହିଁ। ଯେପରି କି ସେ ନିଜ ଭାଇ ଆଗରେ ସମସ୍ତ ଆତ୍ମ ରହସ୍ୟ ବ୍ୟକ୍ତ କରୁଅଛନ୍ତି। କହିଲେ ମୋତେ ତୁମେ ଦୁହେଁ ଚିହ୍ନି ନାହଁ। ମୁଁ ତୁମ ଦୁହିଁଙ୍କି ଚିହ୍ନି ନାହିଁ। ତମ ଘର ଏଠାରେ, ମୋ ଘର କାହିଁ କେତେ ଦୂରରେ। ତୁମମାନଙ୍କ ପରି ଦୁଇଜଣ ବ୍ୟକ୍ତି ପାଇ ମୁଁ ମୋର ଦୁଃଖ କଥା କହି, ଦୁଃଖ ଭାର ଲାଘବ କରିବି ବୋଲି ମୋର ଆଶା ମୁଁ କରି ପାରି ନଥିଲି। ଘରୁ ବାହାରିଲା ବେଳେ ମୋର ଏହି ଦଦରା ଜୀବନ ତରୀକୁ ଦୁଃଖ ସାଗରରେ ଭସାଇ ଦେଇଥିଲି। ସେହି ଅତଳ ସାଗରରେ ତାହା ବୁଡ଼ିବ କି କୂଳରେ ଲାଗିବ ଏହା ମୋର ବିଚାରାତୀତ ଥିଲା। ମୁଁ ଜଳରେ ନବୁଡ଼ି ନମରି ଏ ଦଦରା ତରୀ ଆରୋହଣ କରିବାର କାରଣ ମୋର ଗର୍ଭସ୍ଥ ଶିଶୁର ଜୀବନ ରକ୍ଷା। କାଲି ତୁମମାନଙ୍କର ଦୁର୍ଦ୍ଦଶା ମୋର ସୁଦଶା ଆନୟନ କଲା। ତୁମେ ଦୁହେଁ ମୋର ଜୀବନ ରକ୍ଷାକର୍ତ୍ତା ଅଗ୍ରଜ ଭାଇ।

ତୁମମାନଙ୍କଠାରେ କହିବାକୁ ମୋର ଲଜ୍ଜା ଭୟ କିଛି ନାହିଁ ଅନେକ କଥା ଅଛି, ତୁମେ ଅବଶ୍ୟ ଶୁଣିବ। ଅନେକ ସମୟ ଲାଗିବ। ମାତ୍ର ଆଜି ଶେଷ କଲେ ତୁମ ଦୁହିଁଙ୍କ ଉପଦେଶ ନେଇ ମୁଁ ଖାଦ୍ୟ ଗ୍ରହଣ କରିବି। ନତୁବା ନାହିଁ। ପୁରୁଷ ପ୍ରତି ସ୍ତ୍ରୀ ନିନ୍ଦ୍ୟ ଘୃଣ୍ୟ। ମାତ୍ର ପିତା ପ୍ରତି କନ୍ୟା ଓ ଭାଇ ପ୍ରତି ଭଗିନୀ କେବେ ଘୃଣ୍ୟ ନୁହେଁ। ନିନ୍ଦ୍ୟ ହୋଇ ପାରେ, ଏଣୁ ମୁଁ ଆଶାକରେ ମୋ କଥା ଶୁଣୁଶୁଣୁ ତୁମେ ମୋତେ ଘୃଣ୍ୟ ଧିକ୍କାର ହେବାକୁ ଦେବନାହିଁ। ମୁଁ ତୁମର ଶରଣାପନ୍ନ। ଉପେକ୍ଷିତ ନୁହେଁ। ଭାଇ ବୋଲି ଡାକିଲେ ଘୃଣା କରିବକି ? ଦୁଇବନ୍ଧୁ ଏକା ବାକ୍ୟରେ କହିଲେ, ସେ କି କଥା, ତୁମେ ଆମର ଭଗିନୀ। ଆମ ଦୁହିଁଙ୍କ ଭାଇ ବୋଲି ସମ୍ବୋଧନ କର। ତୁମର କାର୍ଯ୍ୟ ଯେତେ ଦୂର ନିନ୍ଦ୍ୟ ହୋଇଥାଉ ପଛକେ ଆମେ ତୁମକୁ ସହୋଦରା ଭଗିନୀ ପରି କ୍ଷମା ଦେଇ ସାହାଯ୍ୟ କରିବୁ। ତୁମେ ନିଶ୍ଚିନ୍ତ ରୁହ।

ଆଉ ଗୋଟିଏ କଥା - ମୋର ଜୀବନ ଯାତ୍ରା ସହିତ ଯେଉଁମାନଙ୍କ ନାମ, ସଂଶ୍ଳିଷ୍ଟ ସେମାନଙ୍କ ନାମ ବାସସ୍ଥାନ ଗୋପନ ରଖିବାକୁ ଚେଷ୍ଟା କରିବି। ତାହା ଜାଣିବା ତୁମର ପ୍ରୟୋଜନ ବା କ'ଣ ? ମୋର ଦୁର୍ଦ୍ଦଶାର କଥା ଶୁଣି ତୁମେ ପ୍ରତିକାର ଲୋଡ଼ିବାକୁ ଚେଷ୍ଟା କରିପାର। ସେଥିରେ ଲାଭ ନାହିଁ। ଏହା ମୁଁ ଜାଣେ। ତୁମର ସାହାଯ୍ୟ ଓ ସହାନୁଭୂତି ମୋର ଲୋଡ଼ା ! ପ୍ରତିହିଂସା ନେବାରେ ପ୍ରତିକାର କରିବାରେ ମୋର ସୁଖ ନାହିଁ। ଲାଭ ନାହିଁ। ମନ କଷ୍ଟ ହିଁ ସାର। ମୁଁ ଗୋପନରେ ରହିବାକୁ ଇଚ୍ଛାକରେ। ନିତାନ୍ତ ପ୍ରୟୋଜନ ହେଲେ ଗୋପନରେ କାହାରି କାହାରି ନାମ କହିପାରେ। ମାତ୍ର ତାହା ମଧ୍ୟ ପ୍ରୟୋଜନ ହେବ ନାହିଁ ! କେମନ୍ତ !

"ନାମ ଜାଣିବାର ଆମ୍ଭମାନଙ୍କର କିଛି ଦରକାର ନାହିଁ।" ତେବେ ଶୁଣ।

ଝରି

ମୁଁ ବ୍ରାହ୍ମଣ କନ୍ୟା, ପିତା ମାତା ଦରିଦ୍ର। କିନ୍ତୁ ସୁରୂପ ଥିଲେ ମୁଁ ଏକମାତ୍ର କନ୍ୟା, ମୁଁ ଅତି ସୁନ୍ଦରୀ ବୋଲି ବାଲ୍ୟ କାଳରୁ ଗ୍ରାମରେ ମୋର ଖ୍ୟାତି ଥିଲା। ଶୈଶବାବସ୍ଥାରେ ମାତୃବିୟୋଗ ଘଟିଥିଲା। ମୋର ଭାଇ ଓ ପିତାଙ୍କ ପ୍ରତି ଦୁର୍ବହ ହୋଇ ପଡ଼ିଲା, ସେହି ବିୟୋଗ। ଆମ ଗ୍ରାମର ଅଳ୍ପଦୂର ବର୍ତ୍ତୀ ଗୋଟିଏ ସମୃଦ୍ଧିଶାଳୀ ଗ୍ରାମର ଭୂମ୍ୟାଧିକାରୀ ଧନିକ ବ୍ରାହ୍ମଣର ଦୁଇଗୋଟି ସନ୍ତାନ ଥିଲେ। ମୋର ଶ୍ୱଶୁର ମୋର ରୂପ ଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କ ଜ୍ୟେଷ୍ଠପୁତ୍ରର ଅନୁରୂପା ପତ୍ନୀ ହେବି ବୋଲି ଭାବିଲେ। ମୋ ପିତାଙ୍କ ପ୍ରତି ଏ ପ୍ରସ୍ତାବ କଳ୍ପନାତୀତ ସୁଯୋଗ ନିଧି ପ୍ରାପ୍ତି ସ୍ୱରୂପ ହେଲା। କନ୍ୟାର ଭବିଷ୍ୟତ ମଂଗଳମୟ ସଙ୍ଗେ ସଙ୍ଗେ ଧନ ଓ ସ୍ୱର୍ଗପ୍ରାପ୍ତି କିଏ ଛାଡ଼େ ? ପିତା ଗୌରୀ ଦାନ ଦେଇ ପକାଇଲେ। ଏଦାନ ଏକ ବିଶେଷ ଦାନ, ପୁଣି ପିତୃ ସୁଖ ବା ପିତୃ ଗୃହ ଦେଖିଲେ ଦାନ ଗ୍ରହୀତାର ସ୍ୱତାଂଶ କ୍ଷତି ହେବାର ଆଶଙ୍କା ଶ୍ୱଶୁରଙ୍କ ମନରେ ଜାଗରୁକ ହୋଇଥିଲା। ଏଣୁ ବିବାହ ପରେ ପିତୃ ଗୃହ ବା ପିତୃ ମୁଖ ମୋ ଦୃଷ୍ଟିରେ ପଡ଼ିନାହିଁ। ମୁଁ ଧନବନ୍ତ ଭୂମ୍ୟାଧିକାରୀଙ୍କର ଜ୍ୟେଷ୍ଠା ବଧୂ ହୋଇ ରହିଲି।

ଗୃହରେ ଶାଶୁ ଶ୍ୱଶୁର ସ୍ୱାମୀ ଦେବର ଓ ମୁଁ। ଏହାଛଡ଼ା ଚାକର ଚାକରାଣୀ ମଧ୍ୟ ଥିଲେ, ଦେବର ଓ ମୁଁ ସମବୟସ୍କ ବୋଇଲେ ଚଳେ। ହେଲେ ସେ ବର୍ଷେ ଦେଢ଼ ବର୍ଷ ବଡ଼ ହୋଇ ପାରନ୍ତି। ଆମେ ଦୁହେଁ ଭାଇ ଭଉଣୀପରି ଖେଳିବୁଲି ଦିନ

କଟାଉଥାଉଁ, ସ୍ୱାମୀ ସହିତ ସାକ୍ଷାତ ତ ବିଧିନାହିଁ। ତୁମକୁ ବି ଜଣା ଥିବ। କ୍ରମେ ଦେବରଙ୍କର ବିବାହ ହେଲା। ମାତ୍ର ଧନୀ ଗୃହରେ। ସୁତରାଂ ଦେବରଙ୍କର ସହଧର୍ମିଣୀ ମୋପରି ପିତୃ ଗୃହରୁ ଶ୍ୱଶୁର ଗୃହକୁ ଚିର ନିର୍ବାସିତା ହୋଇ ପାରିଲେ ନାହିଁ। ଧନୀକ ପୁତ୍ରୀ ସତ୍ୟ, ମାତ୍ର ଧନ ତୁଳନାରେ ତାଙ୍କର ରୂପରେଖ ନଥିଲା। ସେ ଆପଣା ପିତ୍ରାଳୟକୁ ଫେରିଗଲେ। ମୁଁ ଶ୍ୱଶୁର ଗୃହରେ ଏକମାତ୍ର ରୂପସୀ ସ୍ନେହ ପାତ୍ରୀ।

ବିପତ୍ତି ଏକାକୀ ଆସେ ନାହିଁ। ସାଙ୍ଗସାଥିତାର ନେଇ ମେଣ୍ଟବାନ୍ଧି ଆସେ। ସେତେବେଳେ ମୋର ବୟସ ହେଲାଣି ବାର ବର୍ଷ, ସାମାନ୍ୟ ରୋଗଗ୍ରସ୍ତ ହୋଇ ମୋର ଶ୍ୱଶୁର ଅଳ୍ପଦିନ ମଧ୍ୟରେ ଆମମାନଙ୍କୁ ଶୋକ ସାଗରରେ ଭସାଇ ଚାଲିଗଲେ। ଏ ଶୋକାଗ୍ନି ନିର୍ବାପିତ ହୋଇନଥାଏ। ମୋର ସ୍ୱାମୀଙ୍କର ଅକାଳ ବିୟୋଗ ହେଲା। ଶୋକ ଉପରେ ଶୋକ ଦୁଃଖ ଉପରେ ଦୁଃଖ। ଏ ହତଭାଗିନୀର ଚୁଡ଼ି ଅଳଙ୍କାର ବେଶଭୂଷା ସବୁ ଚିତା ସଙ୍ଗେ ସଙ୍ଗେ ଗଲା। ମୁଁ ମନେ କରୁଥାଏ, ମୋରି ପୋଡ଼ା କପାଳର ସବୁଦୋଷ ପିଲାଟି ଦିନରୁ ମା ଗଲେ। ପିତା କେଉଁ ଆଡ଼େ ଦେଶ ତ୍ୟାଗ କରି ଚାଲିଗଲେ। ଶ୍ୱଶୁର ଘରକୁ ପାଦ ଦେଲି, ଶ୍ୱଶୁର ମଲେ, ସ୍ୱାମୀ ମଲେ। ଜୀବନର ସୁଖ ସାମଗ୍ରୀ ସବୁ ଗଲା। ମୁଁ ହତଭାଗିନୀ ନୁହେ ଯେବେ ତେବେ ହତଭାଗୀ କିଏ ? ମୋର ଦେବରଙ୍କର ବିବାହିତା ପତ୍ନୀଙ୍କୁ ଲକ୍ଷ୍ୟକରି ଲୋକ କହନ୍ତି ଧନୀ ଘର ଝିଅ ବୋଲି କହିଲେ କଣ ହେଲା, ସେ କୁଛିତାର ହାତ ଧରିଲା ଦିନୁ ଏ ଗୃହର ସବୁ ପ୍ରକାର ଅମଙ୍ଗଳ ଘଟିଲା। ବାପ ମଲେ ଭାଇ ମଲେ। ମୋତେ କେହି ନିନ୍ଦା କରନ୍ତି ନାହିଁ ବା ଧିକ୍କାର ଦିଅନ୍ତି ନାହିଁ। ସ୍ୱାମୀଙ୍କ ମୃତ୍ୟୁ ହେଲା ବେଳେ ମୁଁ ବୟଃପ୍ରାପ୍ତା ହୋଇନଥାଏ। କ୍ରମେ ବୟଃପ୍ରାପ୍ତା ହେଲି। ମୋତେ ନିନ୍ଦା-ବା-ଘୃଣା କରିବା ତେଣେ ଥାଉ ଶାଶୁ ଓ ଦେବର ପୂର୍ବପରି ସେହି ଚକ୍ଷୁରେ ଦେଖୁଥାନ୍ତି। ମୁଁ ମଧ୍ୟ ସେ ଦୁହିଁଙ୍କର ବିଶେଷ ଅନୁଗତ। ଦୁଇ ତିନି ବର୍ଷ ସୁଖରେ ନିର୍ବିଘ୍ନରେ ଚାଲିଗଲା। ପୁଣି ନୂଆ ଦୁର୍ଯୋଗ, ମୋର ଦେବରଙ୍କ ବିବାହିତା ସ୍ତ୍ରୀ ଆପଣା ପିତୃ ଗୃହରେ ପ୍ରାଣତ୍ୟାଗ କଲେ। ଏହା କମ୍ ବିପତ୍ତି ଓ ଦୁଃଖର କଥା ନୁହେଁ। ମାତ୍ର ଶାଶୁଙ୍କର ବା ଦେବରଙ୍କର ମନରେ ଦାରୁଣ ମନସ୍ତାପ ଉପସ୍ଥିତ ହୋଇଥିଲା। ତହିଁର କୌଣସି ଲକ୍ଷଣ ମୁଁ ଦେଖି ପାରିଲି ନହିଁ। ବରଂ କିଛି ଦିନ ଗଲା ଉତ୍ତାରୁ ଦିନେ ଦେବର ମୋର ଶାଶୁଙ୍କୁ କହୁଥିବାର ଅନ୍ତରାଳରେ ଥାଇ ଶୁଣିଲି ଯେ ଅଲକ୍ଷଣୀ ମଲା ପାପ ଗଲା। ଶାଶୁ କହିଲେ ହଁ ବାପ ତୋର ଧନ ଅଛି, ରୂପ ଅଛି, ଘର କରିବାର ବୟସ

ଯାଉ ନାହିଁ କେତେ ସୁନ୍ଦରୀ କନ୍ୟା ତୋତେ ମିଳିବେ । ଭଲ ଦେଖି ଗୋଟିଏ ବିବାହ ହେବୁ । ଯେ ଗଲା ତା ଲାଗି ଦୁଃଖ କଣ । ମୋର ଦେବର କୌଣସି ଉତ୍ତର ଦେଲେ ନାହିଁ ।

ଦିନେ ମୁଁ କହିଲି, ଶୀଘ୍ର ବିବାହ ହୋଇପଡ଼ । ଘରେ ଏକମାତ୍ର ପୁରୁଷ ତୁମେ । ବିବାହ ନହେଲେ ବଂଶ ରକ୍ଷା ହେବ କିପରି ? ତୁମରି ପୁଅଠାରେ ତ ଏ ବଂଶର ପାଣି ପିଣ୍ଡର ଆଶା । ବିପତ୍ନୀକ ହୋଇ ରହିବା ଉଚିତ ନୁହେଁ । ମୋର ଦେବର କହିଲେ ସତ କହିଲ ମାତ୍ର ଜୀବନରେ କେଉଁ ସ୍ଥିରତା, ବାପା ଗଲେ, ଭାଇ ଗଲେ, ମୁଁ ବଞ୍ଚିବି ଏଥିର ପ୍ରମାଣ କ'ଣ ? ପୁଅ କଥା ପଚାରେ କିଏ, ଆହା, ମୁଁ ଆଶ୍ଚର୍ଯ୍ୟ ହୋଇ କିଛି ଦିନ ରହିପାରିବି ନାହିଁ । ତେବେ ତୁମେ ଆଜୀବନ ବିଧବା ହୋଇ ରହିବ କିପରି ? ମୁଁ କହିଲି ସ୍ତ୍ରୀ କଥା ଛାଡ଼ । ଏହାତ ବିଧି ବିଧାନ । ସ୍ୱାମୀ ମଲେ ବ୍ରାହ୍ମଣୀ ତ ଅନ୍ୟ ପତି କରି ନପାରେ । ସୁତରାଂ ଆମେ ସ୍ତ୍ରୀ ଜାତି, କପାଳ ଆଦରି ରହିପାରୁଁ । ତୁମମାନଙ୍କ ପାଇଁ ସେପରି କିଛି ବିଧି ନାହିଁ । ପୁରୁଷ ଜାତି ରହିପାରନ୍ତି ନାହିଁ । ଏହା ଦେଖାଯାଉଛି । ତୁମେ ଘରର ମୁରବୀ ଘଟକ ତୁମେ ଏ କଥା କହିଲେ, ଚଳିବ କିପରି । ସେ କହିଲେ, ତୁମର ଦୁର୍ଦ୍ଦଶା ଦେଖି ମୋର ଆଉ ବିବାହ ହେବାର ଇଚ୍ଛା ନାହିଁ । ଦେଖାଯାଉ, ବର୍ତ୍ତମାନ ତ ତାର ବିଚର୍ଯ୍ୟ ନୁହେ । ମୁଁ ଭାବିଲି ମୋର ଦେବର ମୋ ପ୍ରତି ଏଡ଼େ ଅନୁରକ୍ତ ଯେ, ମୋର ଦୁର୍ଦ୍ଦଶା ଦେଖି ସେ ମୋପରି ବ୍ରହ୍ମଚର୍ଯ୍ୟ ପାଳନ କରି ଜୀବନ ଯାପନ କରିବାକୁ ଇଚ୍ଛା କରନ୍ତି । ଆପଣାର ବଂଶ ରକ୍ଷା କରିବାକୁ ମଧ୍ୟ ସେ ନାରାଜ୍ । ଧନ୍ୟ ସ୍ୱାର୍ଥ ତ୍ୟାଗ, ଧନ୍ୟ ତାଙ୍କର ସହାନୁଭୂତି ।

## ପାଞ୍ଚ

ଦୁଃଖ ତ ସବୁଦିନେ ରହେ ନାହିଁ । ସାନ ବୋହୂର ବିୟୋଗ ଦୁଃଖ ବେଶି ଦିନ ରହିବ କିପରି ? ସେ ପୁଣି ଗୃହକୁ ଆସି ନଥିଲା । ଏଣୁ ସ୍ନେହ ସୌହାର୍ଦ୍ଦ୍ୟ ଘଟିନଥିଲା, କେବଳ କୁଟୁମ୍ବ ତା ସ୍ନେହ ବର୍ଦ୍ଧକ ନୁହେଁ ଏକତ୍ରାବସ୍ଥାନ ଓ ଭାବବିନିମୟ ସ୍ନେହ ମମତାକୁ ବଢ଼ାଏ । ବାପ ଘରୁ ଯେ ଆସିନାହିଁ । ତାଠାରେ ସ୍ନେହ ମମତା ନାହିଁ । ସାନ ବୋହୂଙ୍କର ଅନ୍ତର୍ଦ୍ଧାନ ଦୁଃଖ ସ୍ୱପ୍ନପରି ଉଭେଇ ଗଲା । ବିଧବା ହେଲେ ମୁଁ ଘରର ବୋହୂ ମୋ ପ୍ରତି ସ୍ନେହ ସହାନୁଭୂତି ଦ୍ୱିଗୁଣ ହେଲା । ଆହ୍ଲାଦର ସୀମା ନାହିଁ ।

ସ୍ୱାମୀ ସହବାସ ସୁଖରେ ଅନଭ୍ୟସ୍ତା ଅପରିଚିତା। ଘରେ ଯେପରି ଥିଲି ସେହିପରି ଅଛି। ଶାଶୁ ଓ ଦେବରଙ୍କର ସ୍ନେହ ଆଦରର ତ୍ରୁଟି ନାହିଁ। ବିଧବାର ଖାଦ୍ୟ ପରିଧାନର ଯାହା ପ୍ରୟୋଜନ ତହିଁରେ ତ ଅପ୍ରତୁଳତା ନଥିଲା। ଦୁଃଖ ବା ଅଶାନ୍ତି ଆସିବ କାହିଁକି। ବେଶ୍ ସୁଖ ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରୁଥାଏଁ।

ଶାଶୁ ଘରର ମୁରବୀ ସତ, ମାତ୍ର ମୁଁ ଗୃହର ପରିଚାଳିକା, ପଦାର୍ଥ ଦେବା ନେବା ଥୋଇବା ଭାରା ମୋ ଉପରେ। ଗୃହର ଅର୍ଥ ରକ୍ଷା କରିବା ଭାର ମୋ ଉପରେ। ଶାଶୁ ଓ ଦେବରଙ୍କର ତିଳେ ମାତ୍ର ଅବିଶ୍ୱାସ ମୋ ଉପରେ ନଥିଲା। ଅବିଶ୍ୱାସ ରହିବ କିହେତୁରୁ ? ମୋର ତ ସଂସାରରେ ଅନ୍ୟ କେହି ବା ବନ୍ଧୁ ବାନ୍ଧବ ଥିଲେ ଯେ ମୁଁ ସେମାନଙ୍କୁ ଘରର ଧନ ସମ୍ପଦ ବୋଲି ଦେବି ? ମୋର ପିତା ମାତା କଣଥିଲେ ଯେ ମୁଁ ସେମାନଙ୍କର ଭରଣ ପୋଷଣ ନିମନ୍ତେ ଇଚ୍ଛାନୁସାରେ ସାହାଯ୍ୟ କରନ୍ତି। ଜଗତରେ ମୋର ଏକମାତ୍ର ଶାଶୁ ଓ ଦେବର ଭିନ୍ନ କେହି ନଥିଲେ। ସେ ଦୁହେଁ ତାହା ଭଲ ଭାବରେ ଜାଣନ୍ତି। ମୋର ରୀତି ଗତି ପ୍ରକୃତି ମଧ ଭାବରେ ଜାଣନ୍ତି। ଏଣୁ ଗୃହର ସମଗ୍ର ଧନ ସମ୍ପଦ ମୋ ଜିମା ଦେବାକୁ ସେମାନଙ୍କର କୌଣସି ସନ୍ଦେହ ଓ ଶଙ୍କା ନଥିଲା। କହିବାକୁ ଗଲେ ଗୃହର ଚାଳନା ସମ୍ବନ୍ଧରେ ଶାଶୁଙ୍କ ଅପେକ୍ଷା ମୋ ଠାରେ ମୋର ଦେବରଙ୍କର ବେଶି ପରାମର୍ଶ ଚାଲିଥାଏ। ଶାଶୁ ଗୃହକର୍ତ୍ରୀ ମାତ୍ର ମୋର କାର୍ଯ୍ୟ କୁଶଳତା ଯୋଗୁଁ ସେ ସବୁ କର୍ମରେ ନିଃସମ୍ପର୍କ ଭାବ, ଅବଲମ୍ବନ କରିଥାନ୍ତି। ମୋଟ କଥା ମୁଁ ବିଧବା ବଧୂ ହେଲେ ମଧ ଆମ ଘରର ସବୁ ଚାକର ଚାକରାଣୀ, ଧନ ସମ୍ପତ୍ତି ମୋର ଅଧୀନ୍।

ଦେବର ମୋର ବାଲ୍ୟ ବନ୍ଧୁ। ସୁହୃଦ୍। ମୋର ସୁଖ ସ୍ୱାଚ୍ଛନ୍ଦ୍ୟପ୍ରତି ତାଙ୍କର ଶୁଭଦୃଷ୍ଟି ଥାଏ। ବାଲ୍ୟ କାଳରୁ ପରସ୍ପର ମଧ୍ୟରେ ଯେ ସ୍ନେହ ସୌହାର୍ଦ୍ଦ୍ୟ ଥିଲା, ତାହା ସେହି ପରି ଅକ୍ଷୁର୍ଣ୍ଣ ଥାଏ। ପବିତ୍ର ଭାବରେ ଆମ୍ଭମାନେ ଜୀବନଯାପନ କରୁଥାଉଁ। ପାପ ଓ ସନ୍ଦେହ କାହାରି ହୃଦୟକୁ କେବେ ସ୍ପର୍ଶ କରି ପାରି ନଥିଲା। ଆମ ଦୁହିଁଙ୍କ ଆଚରଣରେ ଶାଶୁ ସନ୍ତୁଷ୍ଟ ସେ କେବେ ହେଲେ ଆମ ଆଚାର ବ୍ୟବହାର ପ୍ରତି ସନ୍ଦିଗ୍ଧମନା ହୋଇ ନଥିଲେ। ହେବେ ବା କିପରି ? ଆମେ ଦୁହେଁ ନିର୍ମଳ ଜୀବନ ଅତିବାହିତ କରୁଥିଲୁ। ଗ୍ରାମର ସ୍ତ୍ରୀ ପୁରୁଷ ସମସ୍ତେ ମୋର ଆଚରଣ ଓ କାର୍ଯ୍ୟକଳାପରେ ସନ୍ତୁଷ୍ଟ ଥିଲେ ଏବଂ ଆମ ଦୁହିଁଙ୍କର ଗୃହ ଚାଳନା କୌଶଳ ଦେଖି ଭୂରି ଭୂରି ପ୍ରଶଂସା କରୁଥିଲେ।

କେତେଦିନ ଏହିପରି ଚାଲିଗଲା, ଉଭୟ ଯୌବନ ରାଜ୍ୟରେ ପଦାର୍ପଣ କଲୁ। ତଥାପି ସେହି ପବିତ୍ର ଭାବ। ମୋର ରୋଗ ଉପସ୍ଥିତ ହେଲେ ମୋର ଦେବର ଯେପରି ଯତ୍ନ ଓ ଚିକିତ୍ସାଦିରେ ତୃଟି କରନ୍ତି ନାହିଁ। ତାଙ୍କର ଶରୀର ଅସୁସ୍ଥ ହେଲେ ମୁଁ ତାଙ୍କର ଯତ୍ନ ଶୁଶ୍ରୂଷାରେ ତିଳେ ହେଲେ ତ୍ରୁଟି କରେ ନାହିଁ।

ଥରେ ମୋତେ ଭାରି ଜ୍ୱର ହେଲା, ସନ୍ତତ ଜ୍ୱର, ଅନେକଦିନ ଭୋଗିବାକୁ ପଡ଼ିଲା, ମୋତେ ଏହି ରୋଗରୁ ମୁକ୍ତ କରିବାକୁ ମୋର ଦେବରଙ୍କର କି ଉତ୍କଣ୍ଠା କି ପରିଶ୍ରମ ତାହା ଭାବିଲେ ତାଙ୍କୁ ପ୍ରଶଂସା ନକରି ରହିବା ଅସମ୍ଭବ। ବେଳେ ବେଳେ ମୋର ମୂର୍ଚ୍ଛା ମଧ ହେଉଥାଏ। ମୋ ନିକଟରେ ସର୍ବଦା ବସି ରହି ଥାଆନ୍ତି। ତାଙ୍କର ଭୋଜନାଦି ନିତ୍ୟକର୍ମ କରିବା ନିମନ୍ତେ କେତେବେଳେ ଯେ ଯାଆନ୍ତି ଓ କେତେବେଳେ ଫେରି ଆସନ୍ତି ତାହା କେବେ ମୋ ଦୃଷ୍ଟିଗୋଚରକୁ ଆସିନଥିଲା। ମୁଁ ମନେ କରୁଥାଏ ଯେ ସେ ଦିନରାତି ମୋ ନିକଟରେ ବସି ଅଛନ୍ତି। ତାଙ୍କର ଭୋଜନ ଶୟନ ତ୍ୟାଗ କରି ଅଛନ୍ତି। ବେଳେ ବେଳେ ଭାବେ ଆହା ମୋ ନିମନ୍ତେ ଏହାଙ୍କର ଏପରି କଷ୍ଟ ସହିବା ବୃଥା - ମୁଁ ତାଙ୍କର କହିବାକୁ ଗଲେ କିଛି ନୁହେଁ। ମୋ ଦ୍ୱାରା ତାଙ୍କର କିଛି ଉପକାର ଏବେ ବା ଭବିଷ୍ୟତରେ ତ ହେବ ନାହିଁ ମୋ ନିମନ୍ତେ ନିଜର ସ୍ୱାସ୍ଥ୍ୟହାନି କରି ଆୟୁକ୍ଷୟ କରିବାର ପ୍ରୟୋଜନ କ'ଣ? ମୋର ଜୀବନରେ ସୁଖର ଆଶା ନାହିଁ। ଏପରି ହତଭାଗୀ ନିମନ୍ତେ ମୂଲ୍ୟବାନ ପ୍ରାଣ କଷ୍ଟ ଭୋଗ କରିବା ବାଞ୍ଛନୀୟ ନୁହେଁ। ମୁଁ ମଲେ ବରଂ ଏହାଙ୍କର ମଙ୍ଗଳ ହୁଅନ୍ତା। ବେଳେ ବେଳେ ଶାଶୁଙ୍କୁ କହେ ମା ମୋ ନିମନ୍ତେ ଏତେ କଷ୍ଟ ସହିବାକୁ ଏହାଙ୍କୁ ବାରଣ କର। ଶାଶୁ କହନ୍ତି, ସେ ତୁମର ଚିକିତ୍ସା ନକଲେ ଆଉ କିଏ କରିବ? ତାଙ୍କୁ ନିଜେ କହିଲେ ତାଙ୍କର କିଛି କଷ୍ଟ ନାହିଁବୋଲି କହି ହସି ଦିଅନ୍ତି। ତାଙ୍କର ଏ ସହାନୁଭୂତି ଓ କଷ୍ଟ ଦେଖି ମୋର ହୃଦୟ ଫାଟି ଯାଉଥାଏ।

କେବଳ ଉତ୍ତାପ ଦେଖୁ ଅଛନ୍ତି। ନାଡ଼ୀ ଦେଖୁ ଅଛନ୍ତି କପାଳ ସ୍ପର୍ଶ କରୁଅଛନ୍ତି। ଶୀତଳ ଜଳ କନା କପାଳରେ ଦେଉଅଛନ୍ତି। କିପରି ଅଛ। କିପରି ବୋଧ ହେଉଛି। କେବଳ ଥରକୁ ଥର ଏହି ପ୍ରଶ୍ନ। ସେହି ପ୍ରଶ୍ନ ଗୁଡ଼ିକ ଯେପରି କି ମୋତେ ଜାଗ୍ରତ କରି ରଖିବ ଏବଂ ଅନନ୍ତ ନିଦ୍ରାରେ ଶୁଆଇ ଦେବନାହିଁ। ମୋର ଦେହ ପୋଡ଼ି ଯାଉଥାଏ। ମୁଣ୍ଡ ଦେଶରେ, ଉତ୍ତପ୍ତ ଅଙ୍ଗାରର ତାପ ବୋଧ ହେଉଥାଏ। ମାତ୍ର ଯେତେବେଳେ ଦେବରେ ମୋ ମୁଖ ନିକଟକୁ ତାଙ୍କର ମୁଖ ଆଣି ପ୍ରଶ୍ନ କରନ୍ତି

ସେତେବେଳେ ତାଙ୍କର ନିଃଶ୍ୱାସ ମୋର ଗଣ୍ଡ ଦେଶରେ ଲାଗେ। ମୋର ଗଣ୍ଡ ଦେଶର ଉତ୍ତାପ କମିଯାଏ। ମୁଁ ମନେ କରେ ଓଃ ମୋର ଶରୀର କି ଉତ୍ତାପ ପୂର୍ଣ୍ଣ ଯେ, ତାଙ୍କର ଉତପ୍ତ ପ୍ରଶ୍ୱାସ ମଧ୍ଯ ମୋତେ ଶୀତଳ ପବନ ପରି ସୁଖକର ହୁଏ। ରାତ୍ରରେ ମୋ ନିକଟରେ ବସି ଢୁଳାଉଥାନ୍ତି। ବେଳେବେଳେ ତାଙ୍କର ମସ୍ତକ ଆସି ମୋରି ଆଲୁଳାୟିତ କେଶ ଗୁଚ୍ଛରେ ବାଜିଯାଉଥାଏ। ମୁଁ ଜାଗ୍ରତ ହୋଇ କହେ ଏ କଷ୍ଟର ପ୍ରୟୋଜନ କଣ ? ମୁଁ ତ ଏତେ ବେଗ ମରି ଯାଉନି। ତୁମେ ଯାଇ ବିଶ୍ରାମ କଲେ ମୋର କି ଅନିଷ୍ଟ ହେବ। ସେ ମାନନ୍ତି ନାହିଁ। ଥରେ ଥରେ ମୋର ମୁଚୁଳାରେ ତାଙ୍କ ମୁଣ୍ଡ ଲାଗିଯାଏ। ଘୁମାଇ ପଡ଼ନ୍ତି। ମୁଁ ଜାଗ୍ରତ ହେଲେ ଭାବେ - ଦେହ କେତେ ସହିବ। ଅବସନ୍ନ ହୋଇ ଶୋଇ ପଡ଼ିଲେ। ଶୋଇଥାନ୍ତୁ। ମୋର ଘୁଞ୍ଚିବାର ଶକ୍ତି ନଥାଏ। ତାଙ୍କ ମୁଣ୍ଡ ମୋ ମୁଣ୍ଡ ଏକାଠି ଲାଗି ରହିଥାଏ। ତାଙ୍କର ପ୍ରଶ୍ୱାସ ମୋ କପାଳକୁ ସ୍ପର୍ଶ କରି ସମୟୋପଯୋଗୀ ଜୀବନର ତୃପ୍ତି ଆନୟନ କରୁଥାଏ। ଥରେ ମୋ ଉତପ୍ତ ଗଣ୍ଡ ଉପରେ ତାଙ୍କର ଶୀତଳ ଗଣ୍ଡ ରଖି ଶୋଇ ପଡ଼ିଥାନ୍ତି। ସେ ସ୍ପର୍ଶ ଶୀତଳ ଲାଗିବାରୁ ଉଠି ପଡ଼ିଲି। ମାତ୍ର ଯେ ମୋ ନିମନ୍ତେ ଆହାର ନିଦ୍ରା ତ୍ୟାଗ କରିଅଛନ୍ତି ତାଙ୍କର କ୍ଲାନ୍ତି ଜନିତ ନିଦ୍ରା ଭଙ୍ଗ କରିବା କି ମହାପାପ ନୁହେଁ। ତାଙ୍କର କ୍ଲାନ୍ତ ଗଣ୍ଡର ଭାର ମୋ ଗଣ୍ଡ ସହ୍ୟ କରିପାରିବ ନାହିଁ ଏହା ଭାବି ତୁନି ହୋଇ ରହିଲି। ଏପରି ଭାବରେ ଉଭୟେ କେତେବେଳଯାଏ ଶୋଇ ରହିଲୁ ମୋର ଠିକ୍ ସ୍ମରଣ ନାହିଁ।

ବିପତ୍ତି ସହାନୁଭୂତି ଆଣେ, ରୋଗ ଚିକିତ୍ସାରେ ସ୍ନେହ ଓ ସହାନୁଭୂତି ମଧ୍ଯ ବେଶିବଢ଼େ। ପରସ୍ପରର ସହାନୁଭୂତି ଏହି ରୋଗ ସମୟରେ। ଅତି ମାତ୍ରିତ ହୋଇଥିଲା। ମୁଁ କ୍ରମେ କ୍ରମେ ଆରୋଗ୍ୟ ହେଲି ମୁଁ ରୋଗଗ୍ରସ୍ତ ହେଲାବେଳକୁ ସ୍ନେହ ସହାନୁଭୂତି କେବଳ ଅତିପ୍ରବଳ ଭାବରେ ବଢ଼ିଲା। ଏପରି ନୁହେଁ। ଭିନ୍ନ ରୂପ ଧାରଣ କଲା। ଏହି ସ୍ନେହ ପୂର୍ବ ସ୍ନେହ ଅପେକ୍ଷା ଭିନ୍ନ। ଏ ସ୍ନେହ ନିଷ୍କପଟ ପବିତ୍ର ନୁହେଁ। ଲଜ୍ଜାମିଶ୍ରିତ ସ୍ୱାର୍ଥ ଜଡ଼ିତ ସ୍ନେହ।

ରୋଗରୁ ମୁକ୍ତି ପାଇଲି। ସେହି ଗୃହ। ସେହି ଦେବର, ସେହି ସବୁ, ମାତ୍ର ସମ୍ବନ୍ଧ ଟିକିଏ ଭିନ୍ନ ହୋଇ ପଡ଼ିଲା। ଆମେ ଦୁହେଁ ଦେବର ଭାଉଜ କି ସ୍ୱାମୀ ସ୍ତ୍ରୀ ତାହା ଆଉ ବୁଝି ପାରିଲୁ ନାହିଁ। ଗୃହ କର୍ମ ସେହି ପରି ଚାଲିଅଛି। ଶାଶୁ ସନ୍ଦେହ ଶୂନ୍ୟା, ଗ୍ରାମବାସୀଙ୍କର ପ୍ରଶଂସା, ଚିକିତ୍ସା ନିମନ୍ତେ ଦେବରଙ୍କ ଉପରେ ସୁନାମ

ବର୍ଷିତ ହେଉଅଛି। ଲୋକଲୋଚନକୁ ଆମେ ଦୁହେଁ ପୂର୍ବବତ୍ ନିର୍ମଳ ଓ ପବିତ୍ର। ମାତ୍ର ଆମ ଦୁହିଁଙ୍କ ମନ କହିଲା ତୁମେ ଦୁହେଁ ଲୋକଙ୍କ ବିଚାରାନୁସାରେ ଦେବର ଭାଉଜ ହେଲେ ସୁଦ୍ଧା ତୁମେ ଦୁହେଁ ସ୍ୱାମୀ ସ୍ତ୍ରୀ, ଆମ ଦୁହିଁଙ୍କୁ ନୂତନ ପ୍ରଣୟ ପ୍ରକାର ସୂତ୍ରରେ ଆବଦ୍ଧ କରି ଦେଇ ଗଲା। ହାୟରେ ମୋର କପାଳ।

ଏହା କହିଲା ବେଳେ ରମଣୀର ଚକ୍ଷୁରୁ ଦରଦରଲୋତକଧାର ଗଡ଼ି ପଡ଼ିଲା। ମନ ଅସ୍ଥିରର ଅସ୍ତିତ୍ୱ ପ୍ରକାଶ କରୁଥିଲା।

ତାହାଦେଖି ଯୁବକ ଦୁହେଁ ମଧ୍ୟ ବିଚଳିତ ହୋଇ ପଡ଼ିଲେ।

ଜଣେ କହିଲେ ଅଧୀର ହେବାର କାରଣ କଣ? ନିଜର ଦୁଃଖ କାହାଣୀ ପ୍ରକାଶ କରି ହୃଦୟ ଭାର ଲାଘବ କର।

ରମଣୀ ପୁଣି ଆରମ୍ଭ କଲେ।

ଶାଶୁଙ୍କର ପ୍ରକୃତି ଅତି ନିର୍ମଳ କୁଟଶୂନ୍ୟ। ସନ୍ଦେହ ତାଙ୍କ ମନକୁ କେବେ ସ୍ପର୍ଶ କରିପାରି ନଥିଲା। ଆମ ଦୁହିଁଙ୍କ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ। ସେ ମନେ କରୁଥିଲେ ଯେ ଆମେ ଦୁହେଁ ବାଲ୍ୟାବସ୍ଥାରେ ଯେପରି ପବିତ୍ରମୟ ସମ୍ବନ୍ଧ ପାଳନରେ ବ୍ରତୀଥିଲୁ ଯୌବନାବସ୍ଥାରେ ମଧ୍ୟ ତଦ୍ରୂପ। ବା ତତୋଽଧିକ ପବିତ୍ର ଭାବରେ କାଳ ଅତିବାହିତ କରୁଅଛୁ। ଏହି ସନ୍ଦେହ ଶୂନ୍ୟ ଧାରଣା ଆମ ଦୁହିଁଙ୍କର ମହାସୁଯୋଗ। ତାଙ୍କର ସରଳ ବିଶ୍ୱାସ-ବେଷ୍ଟନୀ ମଧ୍ୟରେ ନିର୍ଭୟ ମନରେ ରହି ଆମେ ଦୁହେଁ ପାପ କାର୍ଯ୍ୟରେ ଲିପ୍ତ ହେବାକୁ ନିରାପଦ ମନେ କଲୁ। ପ୍ରକୃତରେ ନିରାପଦ, ଶାଶୁ ଗୃହରେ ଥିବାଯାଏ ଏବଂ ଆମ ଦୁହିଁଙ୍କ କପଟତାପୂର୍ଣ୍ଣ ବାହ୍ୟ କାର୍ଯ୍ୟ କଳାପ ଦେଖି ଆମ ଉପରେ ସନ୍ଦେହ କରିବାର କାହାରି ଉପାୟ ବା ସାହସ ନଥିଲା। ଏହିପରି କିଛିଦିନ ଗତ ହେଲା।

ମୁଁ ସ୍ତ୍ରୀ ଏବଂ ଦେବର ଅପେକ୍ଷା ଅଶିକ୍ଷିତା, ତଥାପି ଭାଉଜ ତ, ମୋ କଥାର ଉପଦେଶର ଯେ ମୂଲ୍ୟ ନଥାଏ। ଏପରି ନୁହେଁ। ମୁଁ ଦିନେ ମନେ କଲି ଏ ଅବସ୍ଥା ଏ ସୁଖଭୋଗ ଚିରସ୍ଥାୟୀ ହେବା ଅସମ୍ଭବ। ବିଶେଷତଃ ଦେବରଙ୍କର ପୁତ୍ର ନହେଲେ କୁଳନାଶ ହେବ। ଏ ମୋ ରୂପଗୁଣରେ ମୁଗ୍ଧ ହୋଇ ଚିର ଭାର୍ଯ୍ୟା ରହିବା ଉଚିତ ନୁହେଁ। ବିବାହ ହେବା ଏବଂ ଶୀଘ୍ର ବିବାହ ହେବା ଉଚିତ। ଦିନେ

ତାଙ୍କୁ କହିଲି। ତୁମେ ବିବାହ ନହେଲେ ବଂଶ ନାଶ ହେବ। ଲୋକେ କହିବେ କ'ଣ ?

ସେ କହିଲେ ମୁଁ ତୁମକୁ ପୂର୍ବରୁ କହିଛି, ତୁମେ ଯେପରି ବଡ଼ ଭାଇଙ୍କର ବଂଶ ରଖିଦେଇଗଲ। ମୋର ସ୍ତ୍ରୀ ମଧ ଓ ସେହିପରି ବଂଶ ରକ୍ଷା କରିପାରେ। ମୋର ବିବାହିତା ସ୍ତ୍ରୀ ମଲା। ତା ପରିବର୍ତ୍ତେ ମୁଁ ମରିଥିଲେ ବର୍ତ୍ତମାନ ଦୁଇଜଣ ବିଧବା ଏ ଘରେ ଥାଆନ୍ତେ ସିନା। ବିବାହରେ ଇଚ୍ଛା ନାହିଁ।

ବିବାହରେ ଇଚ୍ଛା ନଥାଇପାରେ ମାତ୍ର ତୁମର ମା ଙ୍କ ପ୍ରତି ଦୃଷ୍ଟି ଦେବା ଉଚିତ। ସେ ଯେ ନାତି ଦେଖିବି ଦେଖିବି ହେଉଛନ୍ତି। ଆଜି ଅଛନ୍ତି କାଲି ନାହିଁ। ତାଙ୍କର ମନ ତୁଷ୍ଟି କରିବା ତ ତୁମର କର୍ତ୍ତବ୍ୟ। ତୁମେ ତାଙ୍କର ଏକମାତ୍ର ପୁଅ।

ତୁମ ଗର୍ଭରୁ ପୁତ୍ର ଜନ୍ମହେଲେ ସେ କଣ ନାତି ନୁହେଁ କି ?

ରାମ ରାମ ସେ କଥା କୁହନାହିଁ। ମୋର ପୁତ୍ର ନହେଉ। ମୋର ପୁତ୍ର ହେଲେ ସେ ସିନା ବଂଶ ମୁଖରେ କାଳି ବୋଳିବ। ସେ କଣ ବଂଶ ଉଜ୍ଜ୍ୱଳ କରିବ। ନା ଲୋକେ ତାକୁ ତୁମର ପୁତ୍ର ବୋଲି ଗ୍ରହଣ କରିବେ ? ଏପରି ଅସଙ୍ଗତ ଆଲୋଚନା କର କାହିଁକି। ଏ ଲୋକହସା କଥା କୁହ କାହିଁକି ? ବିଶେଷତଃ ମାଙ୍କ କଥା ଭାବିବା ତୁମର ଉଚିତ। ଶୀଘ୍ର ବିବାହ ହୁଅ। ଏବଂ ଗୋଟିଏ ଉପଯୁକ୍ତା ପାତ୍ରୀ ଯେ କି ଶୀଘ୍ର ଘର ଯୋଗ୍ୟା ହେବ ତାକୁ ବିବାହ ହୁଅ। ମା ସନ୍ତୁଷ୍ଟ ହେବେ। ଏବଂ ଆମ ଦୁହିଁଙ୍କ ଉପରେ ଲୋକଙ୍କର ଆଉ କେବେ କୌଣସି ସଂଦେହ ଜାତ ହେବ ନାହିଁ। ତୁମେ ଶୀଘ୍ର ବିବାହ ନହେଲେ ଲୋକେ ଅବଶ୍ୟ ଆଚରଣରେ ସନ୍ଦିଗ୍ଧ ହେବେ।

ମୋର ସବୁ କଥା ପାଣି ଫାଟି ଯାଉଥିଲା। ମାତ୍ର ଶେଷ କଥାଟି ତାଙ୍କ ମନକୁ ପାଇଲା ଏବଂ ଉତ୍ତମ ରୂପେ ମନକୁ ପାଇଲା। କହିଲେ, ସତ କହିଲ, ଆମ୍ଭମାନଙ୍କ ଦୋଷ ଘୋଡ଼ାଇ ରଖିବାକୁ ଏହା ଗୋଟିଏ ଉତ୍ତମ ଉପାୟ। ମୁଁ ଶୀଘ୍ର ବିବାହ ହେବି। ଯାଅ ମାଙ୍କଠାରେ ପ୍ରସ୍ତାବ କର।

ମୋର ଆନନ୍ଦର ସୀମା ରହିଲା ନାହିଁ। ମୁଁ ଯାଇ ଶାଶୁଙ୍କଠାରେ ଏ ପ୍ରସ୍ତାବ ଆଗତ କଲି। ଶାଶୁଙ୍କର ମଧ ଆହ୍ଲାଦର ସୀମା ରହିଲା ନାହିଁ। ପୁତ୍ରକୁ ଯେତିକି ପ୍ରଶଂସା ମତେ ତତୋଽଧିକ ପ୍ରଶଂସା କରି କହିଲେ।

ମା ବିଧବା ହେବା ତୋର ଦୁର୍ଦ୍ଦଶା । ହେଲେ କଣ ହେଲା, ତୋର ବୁଦ୍ଧି ଓ ଗୁଣର ସୀମା ନାହିଁ । ମୋର ଜ୍ୟେଷ୍ଠପୁତ୍ର ପରିବର୍ତ୍ତେ ତୁ ମୋର ଘର ଚଳାଉଛୁ । ମୋର ପୁତ୍ରର ଯତ୍ନ ନେଉଛୁ । ତାର ମଙ୍ଗଳ ନିମନ୍ତେ ସର୍ବଦା ଯତ୍ନଶୀଳ, ଏପରି ବଧୂ ମୋତେ ଭାଗ୍ୟରୁ ମିଳିଥିଲା । ହେଲେ ମୋର ପୁତ୍ର ଗଲା, ଏତିକି ସିନା ଦୁଃଖ । ଅନ୍ୟବହୂ ଘରେ ଥିଲେ ପୁଣି ଯେପରି ରୂପବତୀ ହୋଇଥିଲେ ମୋ କୁଳରେ କେତେ କଳଙ୍କ ଲଗାଉଥାନ୍ତା । ତାହା କିଏ ଏବେ କହିପାରିବ । ତୋ କଥା ମାନି ଯେ ପୁଅବିବାହ ହେବାକୁ ରାଜି ହେଲା ବଡ଼ ସୁଖର କଥା । ଶୀଘ୍ର ବନ୍ଦୋବସ୍ତ କରିବି । ତୁ ମୋର ସୁଲକ୍ଷଣୀ ବଧୂ । ଶାଶୁଙ୍କର ଏତାଦୃଶ କୋମଳ ପ୍ରଶଂସା ବାକ୍ୟ ମୋର ହୃଦୟରେ କୁନ୍ତାଘାତ କରୁଥାଏ । ଶରୀରରେ ଶତ ବୃଶ୍ଚିକ ବି ଦଂଶନର ପୀଡ଼ା ଜନ୍ମାଉଥାଏ । ଆହା କିପରି ସରଳ ପ୍ରକୃତି ଦେବୀଙ୍କୁ ଆମେ ଦୁହେଁ ପ୍ରତାରିତ କରି କୁକର୍ମ ଲିପ୍ତହୋଇଅଛୁଁ । ମନ ଦୁଃଖାଭିଭୂତ ହେଲା । ଅନେକ ଥର ମନକୁ ଧିକାର ଦିଏ । ଅନୁତାପ ପାଏ, ତ୍ୟାଗ କରିବାକୁ ଇଚ୍ଛା କରେ । କିନ୍ତୁ ସେ ଦୁର୍ବହ ପାଶବିକ ମୋହ, ସେହି ଗୁଡ଼ିକର ଅଭାବ ଲୋଭ ଅଦମ୍ୟ ପାପ ପଙ୍କରେ ନେଇ ପୁଣି ଜଡ଼ିତ କରେ ।

## ଛଅ

ଦେବରଙ୍କର ବିବାହର ଆୟୋଜନ ଲାଗିଲା । ଲୋକ ଯାଇ କନ୍ୟା ସ୍ଥିର କରି ଆଣିଲେ । ବିବାହ ଯୋଗାଡ଼କର୍ତ୍ତ୍ରୀ ମୁଁ ବୋଇଲେ ଚଳେ । ମୁକ୍ତ ହସ୍ତ ନହେଲେ ନଚଳେ, ବ୍ୟୟ କରିବାକୁ କୁଣ୍ଠାବୋଧ କରିବାର କାରଣ କିଛି ନାହିଁ । ଶାଶୁଙ୍କର ଏହି ଗୋଟିଏ ମାତ୍ର ପୁଅ । ତାଙ୍କ ବିବାହରେ, ଗୃହର ସମ୍ପତ୍ତି ବ୍ୟୟ ନହେବତ, ହେବ କାହା ନିମନ୍ତେ । ମୁଁ ସିନା ସଞ୍ଚୟକରି ରଖିବା ଲୋକ । ମୋର ତ ଏ ସମ୍ପତ୍ତି ଭୋଗ୍ୟ ନୁହେଁ ବୋଇଲେ ଚଳେ । ଯେଉଁଠାରେ ଦେବରଙ୍କର ପ୍ରସ୍ତାବ ଅନୁସାରେ ପାଞ୍ଚ ଟଙ୍କା ବ୍ୟୟ ହୁଅନ୍ତା ମୁଁ ସେ ସ୍ଥଳରେ ଦଶଟଙ୍କା ପ୍ରସ୍ତାବ ଦେବାକୁ ତ୍ରୁଟି କରୁନଥିଲି । ବିଶେଷତଃ କନ୍ୟାର ଅଳଙ୍କାର ସମ୍ବନ୍ଧରେ ମୋତେ ବିଶେଷ ମୁକ୍ତ ହସ୍ତ ଓ ପ୍ରଫୁଲ୍ଲ ମନା ଦେଖି ଶାଶୁଙ୍କ ମନରେ ଭାରି ଆନନ୍ଦ ଜାତ ହେଉଥାଏ । ଆମ ପାଖ ଲୋକେ ମଧ ଲାଗି ପଡ଼ି ମୋର ପ୍ରଶଂସା କରୁଥାନ୍ତି । ଅତି ଉତ୍କଣ୍ଠାରୂପେ ସମସ୍ତ ଯୋଗାଡ଼ ହେଲା । ଶୁଭ ଲଗ୍ନପରି ଦେବର ବିବାହ ହେବାକୁ ଗଲେ । ବନ୍ଧୁବାନ୍ଧବ ସାହି ପଡ଼ିଶାଙ୍କୁ ଅଭ୍ୟର୍ଥନା କରିବା ଭାର ମୋ ଉପରେ ସମସ୍ତଙ୍କୁ ଆପ୍ୟାୟିତ

କରୁଥାଏ। ସମସ୍ତେ ମୋ ଆଚରଣରେ ମୁଗ୍ଧ। ଆଠଦଶ ଦିନ ପରେ କନ୍ୟା ସଙ୍ଗରେ ଧରି ବର ଉପସ୍ଥିତ ହେଲେ। ରୋଶଣି ପ୍ରଭୃତିରେ ଆଡୋପର ତୃଟି ନାହିଁ। ଜ୍ଞାତି ଭୋଜନ ବ୍ରାହ୍ମଣ ଭୋଜନ କାଙ୍ଗାଳି ଭୋଜନର ତୃଟି ନାହିଁ। ସମସ୍ତେ ଏତାଦୃଶ ସୁପରିଚାଳିତ ବିବାହ କାର୍ଯ୍ୟ ଦେଖି ମୋଉପରେ ପ୍ରଶଂସା ଅଜାଡୁଥାନ୍ତି। ବର ବଧୂଙ୍କୁ ଘରକୁ ନେଲୁ। ଏ କ'ଣ? ମୁଁ ମନେ କରୁଥିଲି ଅନ୍ତତଃ ବାରବର୍ଷର କନ୍ୟାଟିଏ ଆଣିବେ। ଯେ କି ଅଳ୍ପ ଦିନ ପରେ ଘରଯୋଗ୍ୟା ହୋଇ ପାରିବ। କିନ୍ତୁ ନବ ବଧୂଟି ଆଠଦର୍ଶ ବର୍ଷରୁ ବେଶୀ ବୟସର ନଥିଲା। ମୁଁ ଦେଖି ଅବାକ୍। ଭାବିଲି ଏଥିରେ ମଧ୍ୟ ଦେବରଙ୍କର ଚାତୁରୀ ଅଛି। କନ୍ୟାଟି ସୁନ୍ଦରୀ ଓ ଗୌରବର୍ଣ୍ଣା ମାତ୍ର ଶରୀର କ୍ଷୀଣ। ତାକୁ ଦେଖିଲେ କେବଳ ଦୟାଭାବ ହୃଦୟରେ ଜାତ ହେଉଥାଏ। ଏପରି କନ୍ୟା ଯେ ଶୀଘ୍ର ଘରଯୋଗ୍ୟା ହେବା ତେଣେ ଥାଉ। ପାଞ୍ଚ ଛଅ ବର୍ଷରେ ଯେ ଘରକୁ ଆସିବ, ଏପରି ଆଶା ମଧ୍ୟ ନଥିଲା। ତାକୁ ସ୍ନେହ ଆଦର କରି ରଖିଲି। ଯେ କେତେଟା ଦିନ ଆମ ଘରେ ରହିଲା, ମୁଁ ତାର ଯତ୍ନ କରି ଆସୁଥାଏ। ସେ ମୋ ପ୍ରତି ଏହି ଅଳ୍ପ ଦିନରେ ଏତେ ଅନୁରକ୍ତା ହୋଇ ପଡ଼ିଲା ଯେ ତାର ପିତ୍ରାଳୟକୁ ମଧ୍ୟ ଫେରିଯିବାକୁ ମନବଳାଇଲା ନାହିଁ। ମୁଁ ମଧ୍ୟ ତାକୁ ସାଙ୍ଗରେ ରଖିବାକୁ ଆଗ୍ରହାନ୍ୱିତ ହେଲି। ଯାଆ ସମ୍ବନ୍ଧ ଥିଲେ ମଧ୍ୟ ମୋର ହୃଦୟରେ ତା ପ୍ରତି ମାତୃ ଭାବର ସଞ୍ଚାର ହେଲା। ସେଇଟି ଗୃହରେ ରହିଲେ ତାର ମାତା ପରି ବା ତତୋଽଧିକ ସ୍ନେହରେ ପାଳନ କରି ଯୁବତୀ ହେଲାରୁ ଦେବରଙ୍କ ହସ୍ତରେ ଅର୍ପଣ କରନ୍ତି। ଏହି ଇଚ୍ଛା ବାରମ୍ବାର ଉଦୟ ହେଉଥାଏ। ଏପରି ପ୍ରସ୍ତାବ ମଧ୍ୟ କଲି ମାତ୍ର ମୋର ସେ ଆବେଦନ ଶୁଣା ଯାଆନ୍ତା କାହିଁକି? ଦେବର ପ୍ରସ୍ତାବ କଲେ ତା ପିତା ମୋ ପିତାଙ୍କ ପରି ନିଃସ୍ୱ ନଥିଲେ। ସେ ଧନୀ ବ୍ୟକ୍ତିର କନ୍ୟା। ସେମାନେ ଅଧିକ ଦିନ ସ୍ୱାମୀଘରେ ଛାଡ଼ି ଯିବେ ନାହିଁ କିବା ତଥାପି ମୁଁ କହିପୋଛି ଆଉ ଚାରିଆଠଦିନ ରଖିଲି। ଘର ଲୋକେ ଓ ତାର ଯେଉଁ ଭାଇଟି ଆସିଥିଲେ ସମସ୍ତେ ମୋର ଅମାୟିକ ଭାବାବଲୋକନ କରି ସୁଖାନୁଭବ କଲେ। ଏବଂ ଭାବିଲେ ଏ ଗୃହରେ ମୋର ଯତ୍ନ ଓ ମମତା ହେତୁରୁ ନୂଆ ବୋହୂଟି ବଡ଼ ସୁଖରେ ଦିନ କଟାଇ ପାରିବ। ନୂଆ ବୋହୂ ତା ବାପଘରକୁ ଗଲା। ଆମଘର ପୂର୍ବପରି ଚାଲିଥାଏ। ମୁଁ ଦିନେ ଦେବରଙ୍କୁ ପଚାରିଲି ବିବାହ ହେଲ ସତ ମାତ୍ର ଏ ଯେ ପାଞ୍ଚବର୍ଷ ମଧ୍ୟରେ ତୁମ ଘରକୁ ଆସୁନି। ଏପରି ନାବାଳିକାଟିଏ ବିବାହ ହେଲ କାହିଁକି? ବଡ଼ ଦୁଃଖର କଥା।

ଦେବର ହସି ହସି କହିଲେ, ବିବାହ ହେବାକୁ ତୁମର ଆଦେଶ, ବିବାହ କଲି କେତେ ବର୍ଷର କନ୍ୟା ବିବାହ ହେବା ଉଚିତ ତାହା ତ ମୋତେ କେହି କହି ନଥିଲେ। ଏଣୁ ମୋ ଇଚ୍ଛାନୁରୂପ ଗୋଟିଏ ଶିଶୁ କନ୍ୟା ବିବାହ କଲି। ଏଥିରେ କ୍ଷତି କାହାର ? କାହାରି ତ ନୁହେଁ। ତୁମ କଥା ତ ମଧ ରଖିବା ମୋର ଉଚିତ।

ଏହା ଶୁଣି ମୋର ଦୁଃଖ ଓ କ୍ରୋଧ ଜାତ ହେଲା। କିଛିକ୍ଷଣ କଥା କହିପାରିଲି ନାହିଁ। ତୁନି ହୋଇ ରହିଲି। ଚକ୍ଷୁରେ ଲୋତକ ଦେଖାଗଲା। ଥମ ଥମ ହୋଇ କହିଲି।

ଏପରି କଥା ତୁମର କହିବା ଉଚିତ ନୁହେଁ। ଏ ପାପ ପ୍ରଣୟରୁ କେତେବେଳେ ଯେ କି ଘଟଣା ସୃଷ୍ଟି ହେବ। ସେଥିପ୍ରତି ତୁମର ଟିକିଏ ହେଲେ ଦୃଷ୍ଟି ନାହିଁ କି ବିଚାର ନାହିଁ। ପାପପୁଣ୍ୟ କଥା ପଛେ ଥାଉ। ମୁଁ ଅଭାଗିନୀ ତୁମ ଘରକୁ ଆସି ତୁମର ଭାଇଙ୍କୁ ଖାଇଲି। ତୁମର ଚରିତ୍ରକୁ ଦୂଷିତ କଲି ମାନ ମହତ ଓ ବଂଶର ପରମ୍ପରାକୁ ଜଳାଞ୍ଜଳି ଦେଇ ଏହି କୁକର୍ମରେ ମାତିଛି। ଏହାଠାରୁ ମୋର ମରଣ ଭଲ। ତୁମେ ପୁରୁଷ ଜାତି କିଛି ବିଚାର କର ନାହିଁ। ବେଳେ ବେଳେ ମୁଁ ମୋ କାର୍ଯ୍ୟାଚରଣ ଭାବନା କରି ମର୍ମାହତ ହୁଏ। ତୁମେ ତାହା ଜାଣିବ ଅବା କିପରି ?

ଏହାକହି ମୁଣ୍ଡରେ ହାତଦେଇ ବିମର୍ଷ ବଦନରେ ବସି ରହିଲି। ମୋର ଦୁଃଖ ତାଙ୍କୁ ଦୁଃଖ ଦିଅନ୍ତା କଣ, ମୋ ପ୍ରତି ଅଧିକ ସହାନୁଭୂତି ଆକର୍ଷଣ କଲା। ମୋର ହୃଦୟ ଦେବତାଙ୍କ ପ୍ରତି ମୋର ମାନ ବୋଲି ମନେହେଲା ସେ ମୋ ପ୍ରତି ଅଧିକତର ଅନୁରକ୍ତ ହେଲେ। ଅଢେ ସ୍ନେହ ସୌହାର୍ଦ୍ଦ୍ୟର ସୀମା ରହିଲା ନାହିଁ। ଏଥିରୁ ପରେ ବିଷମ ଫଳ ଫଳିବ ବୋଲି ମୁଁ ଭାବୁଥାଏ। କିଛି ଦିନ ଚାଲିଗଲା।

ମୁଁ ଦିନେ ତାଙ୍କୁ କହିଲି। ପାପ କର୍ମ ସବୁକାଳେ ଛପା ରହିବ ନାହିଁ। ପ୍ରକାଶ ହୋଇପାରେ ଏଥିରୁ ଆମେ ଦୁହେଁ ନିରସ୍ତ ହେବା ଉଚିତ। ସେ କହିଲେ ଆମ କଥା କଦାପି ଜଣାଯିବ ନାହିଁ। ତୁମେ ନିଶ୍ଚିନ୍ତ ଥାଅ। ବିବାହ ହେବା ଦ୍ୱାରା ମୁଁ ଗୋଟାଏ ଶକ୍ତ ବାଡ଼ ପକାଇ ଦେଇଛି। ଆମ ରହସ୍ୟ ଭେଦ ହେବାର ଉପାୟ ନାହିଁ।

ମୁଁ ସେକଥା କହୁନାହିଁ କେବଳ ପୁରୁଷର ବ୍ୟଭିଚାର ଜଣାପଡ଼ି ନପାରେ। ମାତ୍ର ସ୍ତ୍ରୀ କଥା ସ୍ୱତନ୍ତ୍ର। ମୁଁ ଅନ୍ତଃସତ୍ତ୍ୱା ହେଲେ ଉପାୟ ?

ସେଥିକୁ ଉପାୟ ଅଛି।

କି ଉପାୟ ?

ସେଥି ନିମନ୍ତେ ଚିନ୍ତା କାହିଁକି ଆମର ପ୍ରଣୟ ତ ଅସଙ୍ଗତ ନୁହେଁ। ତୁମେ କଣ ପୁରାଣ ପଢ଼ିନାହଁ। ଏପରି ଘଟଣା କି କେବେ ଘଟି ନଥିଲା। ସେତେବେଳର କଥା ଛାଡ଼ ସେ ରୀତି ସିନା ଏବେ ନାହିଁ। ତାହା ଗୁପ୍ତ ପ୍ରଣୟ ବା ବ୍ୟଭିଚାର ନଥିଲା। ବଂଶରକ୍ଷା କରିବାକୁ ବିଧବା ନିଜର ଦେବର ଦ୍ୱାରା ପୁତ୍ର ଉତ୍ପାଦନ କରାଯାଉଥିଲା। ତୁମେ କି ପ୍ରକାଶ୍ୟରେ ବନ୍ଧୁବର୍ଗ ଓ ସମାଜର ଅନୁମତି ନେଇ ମୋତେ ଗ୍ରହଣ କରିଛ ?

ନା ତାହା କରିନାହିଁ। ତଥାପି ଯେବେ ତୁମ ଗର୍ଭରୁ ପୁତ୍ର ଜାତ ହୁଏ। ମୁଁ ତାକୁ ମୋର ମୋର ପୁତ୍ର ବୋଲି ଗ୍ରହଣ କରିବି। ଜାତି ମହତ୍ତ୍ୱର ଜଳାଞ୍ଜଳି ଦେବି, ହେଲା।

ମିଛ କଥା - ଏ ପ୍ରତିଜ୍ଞା ସବୁ ଦିନ ମନରେ ନଥିବ। ଯଦି ଏ ଭାବ ଥିଲା ତ ବିବାହ ହେଲ କାହିଁକି ? ସେ ବିଚାରିର ଗତି କଣ ହେବ।

ତାକୁ ମଧ ସହଧର୍ମିଣୀ କରି ରଖିବି।

ସବୁ ମିଛ। ଏ ସାହସ ତୁମର ବା କୌଣସି ପୁରୁଷର ନାହିଁ। ତୁମେ ଏ କଥା ପୂର୍ବେ ମୋତେ କହିଥିଲ ? ମୁଁ ସେଥିରେ ଆଶା ନରଖି ତୁମର ବିବାହ ଯୋଗାଡ଼ କଲି। ଏତେବେଳେ ପୁଣି ସେହି କଥା। ତୁମେ ଏ ଅଭ୍ୟାସ ଛାଡ଼। ନହେଲେ ମୁଁ ଗୃହତ୍ୟାଗିନୀ ହେବି।

ମୋର ଏକଥା ଶୁଣି ହାତ ଧରି ପକାଇଲେ। କେତେ ଅନୁନୟ ବିନୟ କଲେ। ସେଥିରେ ମୋର ସେ ବିଷାଦ ଭାବ କେଉଁ ଆଡ଼େ ଉଭେଇ ଗଲା। ଯଥା ପୂର୍ବଂ ତଥା ପରଂ।

ସାତ

କୌଣସି କୁ-ଅଭ୍ୟାସ ତ୍ୟାଗ କରିବାକୁ ମନ ସ୍ଥିରତା ଆବଶ୍ୟକ। ଯାହାର ମନ ଆଣ୍ଟନୁହେଁ ସେ ସବୁ କଥାରେ ଲଡ଼ବଡ଼। ଯାହାର ହୃଦୟରେ ବଳ ନାହିଁ। ସେ ଆଜି କଥାଏ ହେଲେ କାଲି କଥାଏ କହେ ଓ କରେ। ଆଜି ଯାହାକୁ ଘୃଣା କରେ,

କାଲି ତାକୁ ସୁଖପାଏ। ଆଜି ଯାହା ଛାଡ଼ିବି ବୋଲି ପ୍ରତିଜ୍ଞା କରେ, କାଲି ତାକୁ ପୁଣି ଆଦର କରି ଟାଣିନିଏ। ମାନସିକ ଦୃଢ଼ତାର ଅଭାବରୁ ଏହା ଘଟେ। ଏ କଥା କିଏବା ଅସ୍ୱୀକାର କରିବ? ମୋର ମାନସିକ ବଳ ଗୋଟାଏ ପାଣି ଫୋଟକା ପରି, ମୁଁ ଏକାକିନୀ ଥିବାବେଳେ ଯାହା କରିବାକୁ ଭାବିଥାଏ ଦେବର ତାହା ଗୋଟାଏ ଫୁଟ୍‌କିରେ ଉଡ଼ାଇ ଦିଅନ୍ତି। ମୁଁ ତାଙ୍କ କଥା ମାନି ଯେମନ୍ତ ତାଙ୍କର ସାଦର ଅନୁନୟ ବିନୟର ବଶବର୍ତ୍ତିନୀ ହେବାକୁ ଲାଗିଲି, ତାଙ୍କର ସ୍ନେହ ମମତା ସଙ୍ଗରେ ଟିକିଏ ପ୍ରଭୁତା ମଧ୍ୟ ମିଶିବାକୁ ଲାଗିଲା।

ନିଃସହାୟ, ଅବଳା, ସବୁ ମାନିନେବାକୁ ପଡୁଥାଏ। ମୋର ଉପାୟ ହରାଇ ବସିଲି, ତାଙ୍କର କୌଣସି କାର୍ଯ୍ୟର ପ୍ରତିବାଦ କରିବାକୁ ଆଉ ଅବସର ମିଳିଲା ନାହିଁ। ମନକୁ କେତେ ଥର ଧିକ୍କାର କରିଛି। ନିଭୃତରେ ବସି କାନ୍ଦି ଅଛି, ଗୃହରୁ ଗଲେ ଶାଶୁ ଦେବରଙ୍କର ମଙ୍ଗଳ ହୁଅନ୍ତା ବୋଲି ଭାବେ। ମାତ୍ର ଯିବି କିପରି ଏବଂ କୁଆଡ଼େ? କିଛି ସ୍ଥିର କରିପାରେ ନାହିଁ। ତୁନି ହୋଇ ରହେ। ଥରେ ଥରେ ଭାବେ ଯେବେ ଅନ୍ତଃସତ୍ୱା ହୋଇପଡ଼େ ତେବେ ଉପାୟ କଣ? ଦେବର କି ଆଉ ରଖିବେ ନା ପଚାରିବେ? ବ୍ୟଭିଚାରିଣୀ ହୋଇ ବାହାରିଯିବାକୁ ବାଧ୍ୟ ହେବି। ନିଜ ଦୋଷ କ୍ଷାଳନ ନିମନ୍ତେ ଅନ୍ୟର ଉପରେ ଦୋଷାରୋପ କରିବା ସ୍ୱଭାବିକ। ଏ ଚିନ୍ତା ଥରେ ଥରେ ଆତ୍ମହତ୍ୟା କରିବାକୁ ପ୍ରବୃତ୍ତ କରାଏ। କିନ୍ତୁ ଜୀବନଟା ଏଡ଼େ ଶସ୍ତା ଓ ତୁଚ୍ଛ ବୋଲି ମନ ମାନେ ନାହିଁ। ଆତ୍ମହତ୍ୟା ସଂକଳ୍ପ ତ୍ୟାଗକରେ।

ଗୃହକର୍ମ ନିର୍ବିଘ୍ନରେ ଚାଲୁଥାଏ। ଶାଶୁ ପ୍ରତି ସ୍ନେହ ଓ ଭକ୍ତିର ତ୍ରୁଟି କରାଏ ଦେବରଙ୍କ ସ୍ୱଭାବ ପୂର୍ବପରି - କେବେ କେବେ ତତୋଧିକ। ସବୁଚିନ୍ତା ଓ ଅନୁତାପ ସେଥିରେ ଉଭେଇଯାଏ। ମୁଁ ଗୃହକର୍ତ୍ତ୍ରୀ ଦେବର ମୋର ଭର୍ତ୍ତା। ଏ ଭାବରେ ପୁଣି କିଛିଦିନ ଚାଲିଗଲା।

ସୁଖ ତ ଚିରସ୍ଥାୟୀ ନୁହେଁ। ପୁଣି ମୋର କାଳ୍ପନିକ ସୁଖ, ପାପଜନିତ, ସେ ବା ବହୁଦିନ ରହିବ କିପରି? କେତେଦିନ ଲୋକଲୋଚନରେ ଧୂଳି ପକାଉଥିବି। ନାମମାତ୍ର ସୁଖର ଅବସାନ ହୋଇ ଆସିଲା। ମୁଁ ଅନ୍ତଃସତ୍ୱା ହୋଇଥିବାର ଜାଣି ପାରିଲି। ବ୍ୟଭିଚାରିଣୀ ପାପ ଗର୍ଭକୁ ଗୋପନ କରେ। ମୁଁ ମଧ୍ୟ ଗୋପନ କଲି। କପଟରେ କେତେକ ମାସ ଚଳାଇ ନେଲି, ପ୍ରକାଶ କରୁନଥାଏ। ଯେତେବେଳେ

ମୋର ସଂପୂର୍ଣ୍ଣ ବିଶ୍ୱାସ ହେଲା ଯେ ମୋର ଗର୍ଭରେ ସନ୍ତାନ ରହିଲା । ସେତେବେଳେ ମୋର ହୃଦୟରେ ଭିନ୍ନ ଭାବ ଜାତହେଲା । ମାତୃଭାବ ମନକୁ ଅଧିକାର କରିବସିଲା । ଗର୍ଭସ୍ଥ ସନ୍ତାନକୁ ଯେ କୌଣସି ପ୍ରକାରେ ବଞ୍ଚାଇ ରଖିବାକୁ ମୁଁ ବ୍ୟାକୁଳ ହେଲି । ଦେବର ସହବାସ ପାପ ବ୍ୟଭିଚାର ବୋଲି ଜାଣୁଥିଲେ ମଧ ତାହା ସେତେବେଳେ ପାପ ଓ ଦୋଷାବହ ବୋଲି ମନେ ହେଲାନାହିଁ । ଗର୍ଭସ୍ଥ ସନ୍ତାନର ଜୀବନରକ୍ଷା ପାପକ୍ଷାଳନର ପ୍ରାୟଶ୍ଚିତ୍ତ ବୋଲି ମନ ବାରବାର କହିଲା । ପ୍ରତିଜ୍ଞା କଲି ସନ୍ତାନର ଜୀବନ ରକ୍ଷା ନିମନ୍ତେ । ନିଜକୁ କଳଙ୍କିନୀ ବୋଲି ପରିଚୟ ଦେବି । ଏଥିରେ ଲଜ୍ଜା ନାହିଁ । ମନେକଲି ସନ୍ତାନ ପ୍ରାପ୍ତି ନିମନ୍ତେ ମୋର ଦେବର ସଂଗ - ସୁଖ ନିମନ୍ତେ ନୁହେଁ ।

ଦେବରଙ୍କୁ କହିବା ଉଚିତ କି ନା କଥା ହୃଦୟରେ ନାଚିଲା । ସେ ଶୁଣିଲେ ତାଙ୍କର ପୂର୍ବ ପ୍ରତିଜ୍ଞା ପାଳନ କରି ମୋର ଗର୍ଭରୁ ଜାତ ଶିଶୁଟିକୁ ପୁତ୍ରବତ୍ ପାଳିବେ ଓ ଲୋକରେ ମୁହଁ ଦେଖାଇବେ । ଏ ସତ୍‌ସାହସ ତାଙ୍କର ନାହିଁ । ଗର୍ଭନଷ୍ଟ କରିବାର ଅବଶ୍ୟ ଚେଷ୍ଟା କରିବେ । ମୋର ଗର୍ଭଜାତ ଶିଶୁକୁ ଆତ୍ମଜ ବୋଲି ପରିଚୟ ଦେବା ତାଙ୍କର ବଳ କାହିଁ ? କେବଳ ସେ ମୋର ସତୀତ୍ୱ ନଷ୍ଟ କରିବା ନିମନ୍ତେ - ମୋ ସହିତ କାମନା ଲାଳସା ତୃପ୍ତି ପାଇଁ ସିନା ମୋତେ ଏପରି ପ୍ରତାରଣା କରିଥିଲେ । ସେ ଜାତି ଓ ସମାଜର ମୁହଁ ଦେଖିବେ । ନା ମୋର ପୁତ୍ରର ଜୀବନକୁ ଦେଖିବେ ? ହାୟଃ ବିଧାତା ମୁଁ କି କୁହୁକର ବଶବର୍ତ୍ତୀ ହୋଇ ଏ ପାପ ପଙ୍କରେ ଲିପ୍ତ ହେଲି ।

ତାଙ୍କ ବିବେଚନାରେ ମୋର ଗର୍ଭସ୍ଥ ଶିଶୁ ତାଙ୍କର କିଛି ନୁହେଁ ମୋର ତ ସନ୍ତାନ । ମୁଁ ଏହାକୁ ନଷ୍ଟ କରିବି କେଉଁ କାରଣରେ । ମା ସହିତ ସନ୍ତାନର ଯେଉଁ ଘନିଷ୍ଠତା, ପିତା ସହିତ ତ ସେ ଘନିଷ୍ଠତା ନାହିଁ । ବାପ ସିନା ନିଜର ଔରସ, ପୁତ୍ରକୁ ନିଜ ସ୍ୱାର୍ଥରେ ଛଡ଼ାଇ ଘେନିଯାଏ । ମାତ୍ର ଯେଉଁ ପୁତ୍ରକୁ ବ୍ୟଭିଚାର ଜନିତ ବୋଲି ମନେକରେ ତାକୁ ତ ମା ଠାରୁ ଛଡ଼ାଇ ନିଏ ନାହିଁ । ସେ ତ ମାର ହୋଇ ରହେ । ମୋର ଗର୍ଭସ୍ଥ ଶିଶୁ ତ ମୋର ନିଜସ୍ୱ । ତାକୁ ତ କେହି ମୋଠାରୁ ଛଡ଼ାଇ ନେଇ ପାରିବେ ନାହିଁ । ତେବେ ତାକୁ ମୁଁ ନଷ୍ଟ କରିବି କାହିଁକି । ତାକୁ ବଞ୍ଚାଇବାକୁ ମୋର ପ୍ରାଣ ପଣ କରିବି । ଯେତେଦିନ ପାରିଲି ଗର୍ଭଗୋପନ କରି ରଖିଲି ।

ଦେବର କାର୍ଯ୍ୟବଶତଃ ସ୍ଥାନାନ୍ତରକୁ ଯାତାୟତ କରନ୍ତି । ଏମନ୍ତ କି ଦୀର୍ଘ କାଳ ମଧ ପ୍ରବାସରେ ରହିଯାନ୍ତି । ଏହା ମୋ ପ୍ରତି ଏକ ସୁଯୋଗର କାରଣ ହେଲା,

ମୁଁ ମୋର ସନ୍ତାନର ଅନୁଧ୍ୟାନରେ ଥାଏ। ଅନ୍ୟ କେହି ଜାଣି ପାରନ୍ତି ନାହିଁ। ଏହା ମୋର ସୌଭାଗ୍ୟ। ମୋର ଶାରୀରିକ ଗଠନ ଏଥିନିମନ୍ତେ କେତେକାଂଶରେ ମୋର ମନଭାବର ସହାୟକ ଥିଲା। ସମସ୍ତଙ୍କର ଅଜ୍ଞାତରେ ଗର୍ଭଗୋପନ କରି ଚଳୁଥାଏ ସାବଧାନତା ସହକାରେ। ଦିନେ ଦେବର ପଚାରିଲେ, ଅଗତ୍ୟା ତାଙ୍କଠାରେ ପ୍ରକାଶ କରିବାକୁ ବାଧ୍ୟ ହେଲି। ମୋ କଥା ଶୁଣି ସେ ବିମର୍ଷ ହୋଇ ପଡ଼ିଲେ। ମୁଖ ଶୁଖିଗଲା, ମୁଁ ହସ ହସ ହେବା ଦେଖି ସେ କହିଲେ, ତୁମେ ହସୁଛ ଆମର ଯେ ସର୍ବନାଶ ହେବାକୁ ବସିଲା, ଜାତି ମହତ ମର୍ଯ୍ୟାଦାଆଦିର ମୂଳୋତ୍ପାଟନ ହେବାକୁ ଯାଉଛି।

ମୁଁ କହିଲି ଜାଣିଶୁଣି ଯାହା କରିବାକୁ ଯାଉଛ'ସେଥିନିମନ୍ତେ ଚିନ୍ତା କରିବା ଅନାବଶ୍ୟକ। ମୋ ଗର୍ଭରୁ ଯେ ଜନ୍ମିବ ତାକୁ ନିଜର ପୁତ୍ର ବୋଲି ପରିଚୟ ଦେବ। ପୂର୍ବେ ତ ଏହି ପ୍ରତିଜ୍ଞା କରିଛ, ତୁମ କଥାନୁସାରେ ଫଳପାଇଲ। ମୋ କଥା ମାନିଲ ନାହିଁ।

ଏତେଦିନଯାଏ ମୋତେ ନକହି ଗୋପନ କଲ କାହିଁକି ?

ମୁଁ ତ ପ୍ରବୀଣା ନୁହେଁ, ଜାଣିବି କିପରି ? ଯେତେବେଳେ ଠିକ୍‌ରୂପେ ଜାଣିପାରିଲି ସେତେବେଳେ କହିଲି।

ଉପାୟ

ଉପାୟ ଆଉ କଣ, ଗର୍ଭରକ୍ଷାକରି ପୁତ୍ରକୁ ପାଳନ କରିବା।

ଏହା କି ସମ୍ଭବ।

ଅସମ୍ଭବ କାହିଁକି, ଏହାହିଁ ତ ତୁମର ଓ ମୋର ଇଚ୍ଛା ଉପରେ ନିର୍ଭର କରେ। ଉଭୟଙ୍କ ପରାମର୍ଶରେ ଓ ମତରେ ଆଜି ସନ୍ତାନ ମୋର ଗର୍ଭସ୍ଥ।

ସ୍ତ୍ରୀ-ବୁଦ୍ଧି ପ୍ରଳୟଙ୍କରୀ ତୁମେ ମୋର ସର୍ବନାଶ କରିବାକୁ ବସିଲ।

ତୁମେ ଏଥିରେ ଦୋଷୀ ନା-ମୁଁ। ତୁମ କଥା ଯେବେ ତୁମେ ନରଖ ତେବେ ମୋର ତ ସର୍ବନାଶ ହୋଇରହିଛି। ସନ୍ତାନ ରକ୍ଷା କଲେ ମୋର ରକ୍ଷା।

ଅସମ୍ଭବ.....। ସନ୍ତା ରକ୍ଷାଦ୍ୱାରା ତୁମ ରକ୍ଷା ଅସମ୍ଭବ। ସନ୍ତାନନାଶ ହେଲେ ତୁମର ରକ୍ଷା ଓ ପୂର୍ବବତ ସୁଖ ସ୍ୱାଚ୍ଛନ୍ଦ୍ୟ, ଏହା ଭିନ୍ନ ତୁମର ଆଉ ଗତି ନାହିଁ।

ମୁଁ ବରଂ କଳଙ୍କିନୀ, ବ୍ୟଭିଚାରିଣୀ ଭିକାରୁଣୀ ହୋଇ ଅପବାଦ ମୁଣ୍ଡରେ ବୋହିବି, ମାତ୍ର ମୋର ସନ୍ତାନ ନଷ୍ଟ କରିବି ନାହିଁ। ମୁଁ ସନ୍ତାନ ନଷ୍ଟ କରିବି ବୋଲି ତୁମ ସଙ୍ଗରେ ସହବାସ କରିନାହିଁ। ତୁମେ କହିଥିଲ ପରା ମୋ ଗର୍ଭରୁ ପୁତ୍ର ଜନ୍ମିଲେ ତୁମେ ତାକୁ ନିଜର ପୁତ୍ର ବୋଲି ପରିଚୟ ଦେବ। ଜାତି ମର୍ଯ୍ୟାଦା ତ୍ୟାଗ କରିବ। ଏବେ ମୋର ଗର୍ଭସ୍ଥ ସନ୍ତାନ ଦ୍ୱାରା ତୁମର ଓ ମୋର ଅମଙ୍ଗଳ ହେବ ବୋଲି ଭାବୁଛ ? ସେହି ସନ୍ତାନକୁ ନାଶ କରିବାକୁ ଇଚ୍ଛା କରୁଛ ? ଗର୍ଭଧାରଣ ହିଁ ସ୍ତ୍ରୀର ଧର୍ମ - ଭୋଗଲାଳସାରେ ହେଉ ବା କାମ ପରବଶରୁ ହେଉ ଆମ ଦୁହିଁଙ୍କ ପ୍ରଣୟର ଫଳରୁ ଗୋଟିଏ ଜୀବର ସୃଷ୍ଟି ହୋଇଛି। ସ୍ତ୍ରୀ ପୁରୁଷର ଧର୍ମରକ୍ଷା ହୋଇଛି। ପାପ ପ୍ରବୃତ୍ତିରୁ ଅବଶେଷରେ ପୁଣ୍ୟ ଫଳର ଉଦୟ ହୋଇଛି। ଏହି ସନ୍ତାନ ଦ୍ୱାରା ଲୋକହସା ହୋଇପାରେ, ମାତ୍ର ଆମ ଦୁହିଁଙ୍କ ପାପ ପ୍ରଣୟର ପ୍ରାୟଶ୍ଚିତସ୍ୱରୂପ କଳୁଷ କ୍ଷୟର ସୁଗମ ପଥ ବୋଲି ମୋର ଧାରଣା। ଏହାକୁ ନଷ୍ଟ କରିବାର କ୍ଷମତା ଆମର ନାହିଁ। ସେ ଭାବ ପରିତ୍ୟାଗ କର। ମହାପାତକ ଯେଉଁ ଭୃଣ ହତ୍ୟା, ସେଥିରେ ପ୍ରବୃତ୍ତ ହୁଅନାହିଁ।

ଏହା ଶୁଣି ମୋର ଦେବର ତୁନି ହୋଇ ବସି ରହିଲେ। ଅନେକ କ୍ଷଣ ମ୍ରିୟମାଣ ହୋଇ ବସି ରହିଲେ, ପରେ "ଆଚ୍ଛା" କହି ମୋ ନିକଟରୁ ଚାଲିଗଲେ। ମୁଁ ଭାବିଲି ମୋର କଥା ତାଙ୍କ ମନକୁ ପାଇଲା ବୋଧହୁଏ। ଆଉ ଗର୍ଭନଷ୍ଟର ଚେଷ୍ଟା କରିବେ ନାହିଁ।

ଦୁଇତିନି ଦିନ ଗ୍ରାମାନ୍ତରକୁ ଚାଲିଗଲେ, ସେଠାରୁ ଫେରି ପୂର୍ବ ପ୍ରସଂଗରେ ଆଉ ଆଲୋଚନା କଲେ ନାହିଁ। ମାତ୍ର ମୋ ସହିତ ଘନିଷ୍ଠତା ବଢ଼ାଇବାକୁ ଲାଗିଲେ। ଏପ୍ରକାର ଅଭିନବ ପ୍ରେମାଳାପ ଓ ଗାଢ଼ ସ୍ନେହ ମଧ୍ୟରେ ଯେ ଗୂଢ଼ ଅଭିସନ୍ଧି ଥିଲା। ତାହା ମୁଁ ବୁଝି ପାରି ନଥିଲି। ସେ ମନେ ମନେ ଭାବିନେଲେ ଯେ ସ୍ନେହ ଦ୍ୱାରା ମତେ କରାୟତ୍ତ କରି ଅଛନ୍ତି। ଏବଂ ସେ ଯାହା କହିବେ ବା ଯେଉଁ ଆଦେଶ ଦେବେ ତାହା ମୁଁ ଅମ୍ଳାନ ବଦନରେ ମାନି ନେବି। ଏଣୁ ଦିନେ ପୁଣି ପୂର୍ବ କଥାର ଅବତାରଣା କଲେ। ଏବଂ ଔଷଧ ସେବନ କରିବାକୁ ଅନୁରୋଧ କଲେ। ମୁଁ ତାଙ୍କ ସଙ୍ଗରେ ଜୋର ଜବରଦସ୍ତି ବା ତର୍କ ବିତର୍କାଦି ଚଳିବ ନାହିଁ। ଶଠତା ହିଁ ଏଥିର ପ୍ରତିକାର ଭାବିନେଲି, ତାଙ୍କ ପ୍ରସ୍ତାବରେ ମୁଁ ସମ୍ମତ ହୋଇ ଥିବାର ସେ ବିଶ୍ୱାସ କଲେ। ତାଙ୍କ ପ୍ରଦତ୍ତ ଔଷଧ ସେବନ କରିବାକୁ ସ୍ୱୀକୃତ ହୋଇ ତାହା ଗ୍ରହଣ କଲି। ସେଥିରେ ସେ

ଭାରି ଖୁସି, ତିନିମାତ୍ରା ଔଷଧ ଦେଇଥିଲେ, ସେହି ସଂଧ୍ୟାରେ ଏକ ମାତ୍ରା ପାନ କରିଥିବାର କହିଲି ବାକି ଦୁଇମାତ୍ରା ତାଙ୍କୁ ଦେଖାଇ ଦେଲି। ତାଙ୍କର ପ୍ରତୀତି ଜନ୍ମିଲା। ଆରଦିନ ସକାଳେ ପୁଣି ତାଙ୍କୁ ଏକମାତ୍ରା ଔଷଧ ଥିବାର ଦେଖାଇଦେଲି, ସେ କହିଲେ ଯେ ତିନିମାତ୍ରା ଔଷଧ ସେବନ କଲେ ନିଷ୍ଚୟ ଫଳ ଦେବ। ଏହା ଅମୋଘ ଔଷଧ। ସେଦିନ ସକାଳୁ ପ୍ରକୃତରେ ମୋର ସାମାନ୍ୟ ଜ୍ୱର ବାନ୍ତି ହେଲା। ଏହା ଦେଖି ତାଙ୍କର ସଂପୂର୍ଣ୍ଣ ବିଶ୍ୱାସ ଜନ୍ମିଲା ଯେ ମୁଁ ଔଷଧ ଦୁଇମାତ୍ରା ଭକ୍ଷଣ କରିଥିଲି। ଆଉ ଏକମାତ୍ରା ଭକ୍ଷଣ କଲେ ତାଙ୍କର କଳଙ୍କ ମୋଚନ ହେବ ଏବଂ ସେ ସୁଖ ସ୍ୱାଚ୍ଛନ୍ଦ୍ୟରେ ସଂସାରରେ ପାପଶୂନ୍ୟ ସୁପୁରୁଷ ବୋଲି ପରିଚୟ ଦେଇ ପାରିବେ। ମୁଁ ଖଟରେ ତୁନି ହୋଇ ଶୋଇଥାଏ। ଆହାରେଲେ ମୋ ନିକଟକୁ ଆସି କହିଲେ, ଦେଖ, ବିଶେଷ ପ୍ରୟୋଜନ ଥିବାରୁ ମୁଁ ଘରି ଛଅଦିନ ସକାଶେ ସ୍ଥାନାନ୍ତରକୁ ଯାଉଅଛି। ଆର ପାନକ ଆଜି ସଂଧ୍ୟାରେ ପିଇବ। ଆଉ ଚିନ୍ତାର କାରଣ ନାହିଁ। ମୁଁ ଯାହାଙ୍କ ଠାରୁ ଔଷଧ ଆଣିଥିଲି ସେ କହିଥିଲେ ତିନିପାନ ଖାଇସାରିଲାରୁ ନିଷ୍ଚୟ ଫଳ ମିଳିବ। ସାମାନ୍ୟ ଜ୍ୱର ଓ ବାନ୍ତି ତାର ପୂର୍ବାଭାସ ହୋଇପାରେ। ଭୟର କାରଣ କିଛି ନାହିଁ। ପ୍ରଭୁଙ୍କ କୃପାରୁ ଆମ ଦୁହିଁଙ୍କର ମଙ୍ଗଳ ହେବ। ମୁଁ ଯାଉଛି।

ଏହା କହି ଚାଲିଗଲେ। ମୁଁ ସ୍ୱସ୍ତିବୋଧ କଲି। ଭାବିଲି ଗର୍ଭସ୍ଥ ଶିଶୁର ପ୍ରାଣ ନାଶକୁ ପ୍ରଭୁଙ୍କ କୃପା ବୋଲି ଭାବିବା କେଡ଼େ ନିର୍ବୋଧତା ଓ ହୀନ ପ୍ରକୃତିର ପରିଚୟକ। ତାହାଛଡ଼ା ଈଶ୍ୱର ମଧ୍ୟ ଏତାଦୃଶ ଷଡ଼ଯନ୍ତ୍ରରେ ସଂଶ୍ଳିଷ୍ଟ ବୋଲି ମାନବ ଭାବେ ? ଅଥଚ ମାନବ ଈଶ୍ୱର ବିଶ୍ୱାସୀ ବୋଲି ଢ଼କ୍‌କା ବଜାଇ ବୁଲେ। ଏହା ଭାବି ମନକୁ ଶତଧିକ୍‌କାର ଦେଲି। ମୋର ସାମାନ୍ୟ ଅସୁସ୍ଥତା କେଉଁଆଡ଼େ ଚାଲିଗଲା। ଦେବରଙ୍କ ସ୍ଥାନାନ୍ତର ଗମନ ମୋ ପକ୍ଷରେ ମଙ୍ଗଳଜନକ ହେଲା। ପୁଣି କିଛି ଦିନ ଚାଲିଗଲା।

ଦେବର ଫେରିଲେ। ତାଙ୍କର ବିଶ୍ୱାସ ଥିଲା ଯେ ତାଙ୍କ ପ୍ରଦତ୍ତ ଔଷଧ ଦ୍ୱାରା ଗର୍ଭନଷ୍ଟ ହୋଇଥିବ। ମାତ୍ର ମୋ ଠାରୁ ଯେତେବେଳେ ଶୁଣିଲେ ଯେ ଔଷଧ ଦ୍ୱାରା କୌଣସି ଫଳ ଦିଶିଲା ନାହିଁ। ସେତେବେଳେ ସେ ଅଧୀର ହୋଇ ନିଜ ଅଦୃଷ୍ଟ ନିନ୍ଦା କରିବାକୁ ଲାଗିଲେ। ମାତ୍ର ମୋ ପ୍ରତି ତାଙ୍କର ବିରକ୍ତି ଭାବ ଥିବାର ଜଣାଗଲା ନାହିଁ। କହିଲେ ନିଚେଷ୍ଟ ହୋଇ ରହିଲେ ତ ଚଳିବ ନାହିଁ। ଅନ୍ୟ ଔଷଧ ପ୍ରୟୋଗ କରିବା କିମ୍ବା ଅନ୍ୟ ଉପାୟ ଅବଲମ୍ବନ କରିବାକୁ ହେବ।

